ଶ୍ରୀ ଶ୍ରୀ ରାଧା ରମଣୋ ଜୟତୁ ।

(ଭଜ) ନିତାଇ ଗୌର ରାଧେ ଶ୍ୟାମ ।
(ଜପ) ହରେ କୃଷ୍ଣ ହରେ ରାମ ॥

# ଚରିତ - ସୁଧା

ଅର୍ଥାତ୍

ଶ୍ରୀ ଶ୍ରୀ ମଦ୍ ରାଧାରମଣ ଦାସ ଦେବ
ବାବାଜୀ ମହାଶୟଙ୍କର ଜୀବନ ଚରିତ

## ପ୍ରଥମ ଖଣ୍ଡ

ଶ୍ରୀ ବୈଷ୍ଣବ ଚରଣ ମହାନ୍ତି

# ଚରିତ-ସୁଧା

## ପ୍ରଥମ ଖଣ୍ଡ


**ଶ୍ରୀ ବୈଷ୍ଣବ ଚରଣ ମହାନ୍ତି**

ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର
ଜାତୀୟ ବନ୍ୟା କମିଶନ
ଭୁବନେଶ୍ୱର



ମୁଦ୍ରଣ :
**ମାଧବୀ ପ୍ରିଣ୍ଟର୍ସ**
ଭଗତପୁର, କଟକ-୭୫୩୦୦୯


# CHARITA-SUDHA


**Sri Baishnab Charan Mohanty**
*Executive Engineer*
National Flood Commission
Bhubaneswar



*Published at :*
**Madhabee Printers**
Bhagatpur, Cuttack-753009

ପ୍ରକାଶିକା :
**ଶ୍ରୀମତୀ କ୍ଷୀରୋଦା ମହାନ୍ତି**, ବି.ଏ.
ଜଗତ୍‌ସିଂହପୁର
କଟକ

*Publisher :*
**Srimati Khiroda Mohanty**, *B.A.*
Jagatsinghpur
Cuttack

ପ୍ରଥମ ମୁଦ୍ରଣ :
ଡିସେମ୍ବର ୩୧ ତାରିଖ

*FIRST EDITION*
*31st. December, 1977*

ଶ୍ରୀ ଗୁରବେ ଗୌରଚନ୍ଦ୍ରାୟ ରାଧିକାୟୈ ତଦାଳୟେ
କୃଷ୍ଣାୟ କୃଷ୍ଣ ଭକ୍ତାୟ ତଦ୍ ଭକ୍ତାୟ ନମୋନମଃ

ଶ୍ରୀ ଶ୍ରୀ ରାଧାରମଣୋ ଜୟତି

ଶ୍ରୀଗୁରୁ କଳ୍ପତରୁ ଶ୍ରୀ ଶଚୀନନ୍ଦନଂ ଶରଣମ୍

# କିଏ କରାଉଥାଏ ମୁହିଁ

ପରମ କରୁଣାମୟ ନାମାଚାର୍ଯ୍ୟ ଶ୍ରୀମଦ୍ ଶ୍ରୀ ବାୟାବାବାଙ୍କ ଶୁଭ ସଙ୍କଳ୍ପରୁ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ଏଇ ଅଳ୍ପଦିନ ହେଲା ଆକସ୍ମିକ ଭାବେ ମୁଣ୍ଡଟେକି ଉଠିଥିବା ଶ୍ରୀ କଳ୍ପତରୁ ସେବାଶ୍ରମର ଅଖଣ୍ଡ ଶ୍ରୀ ହରିନାମ କୀର୍ତ୍ତନ, ଶ୍ରୀ ଗୋବିନ୍ଦ, ଗୋପୀନାଥ, ମଦନ-ମୋହନ ଦେବଙ୍କ ଶ୍ରୀମୂର୍ତ୍ତି ତଥା ବାବା ଚନ୍ଦ୍ରଶେଖର ଓ ମା ଅନ୍ନପୂର୍ଣ୍ଣାଙ୍କର କମନୀୟ ଶ୍ରୀ ବିଗ୍ରହ ସୁଶୋଭିତ ଉତ୍ତୁଙ୍ଗ ମନ୍ଦିର ଓ ଆଶ୍ରମର ଶାନ୍ତ କାନ୍ତ ପବିତ୍ର ପରିବେଷ୍ଟନୀ ଆଦି ଧର୍ମ ପିପାସୁ ଭକ୍ତ ସଜ୍ଜନଙ୍କର ଏକ ପରମ ଆକର୍ଷଣୀୟ ପୁଣ୍ୟପୀଠ ହୋଇ ଉଠିଛି । ସେଇ ସେବାଶ୍ରମର ଅନ୍ୟତମ ସହଯୋଗୀ ସେବକ ଭାବେ ପରିଚାଳନା ସମ୍ପର୍କୀୟ କାର୍ଯ୍ୟକ୍ରମ ନେଇ ତଥା ଶ୍ରୀପାଦ ବାବାଙ୍କ ଦର୍ଶନ ଉଦ୍ଦେଶ୍ୟରେ ଅନେକ ସମୟରେ ଆଶ୍ରମକୁ ଯିବାକୁ ପଡ଼େ । ସେଦିନ ଶ୍ରୀପାଦ ବାବା ଆଶ୍ରମରେ ଅବସ୍ଥାନ ନ କରୁଥିଲେ ହେଁ ଭୁବନେଶ୍ୱର ଶାଖା କଳ୍ପତରୁ ସେବାଶ୍ରମର ରବିବାସରୀୟ ସତସଂଗ ବୈଠକରେ ଯୋଗ ଦେବାପାଇଁ ମୁଁ ଆଶ୍ରମକୁ ଯାଇଥିଲି । ଶୁଣିଲି ବୈଠକ ଅନ୍ୟତମ ଭକ୍ତ ଶ୍ରୀଯୁକ୍ତ ପାଣିଗ୍ରାହୀ ବାବୁଙ୍କ ଘରେ ହେଉଛି । ତାଙ୍କ ଘରେ ପହଞ୍ଚି ଶୁଣିଲି ବଙ୍ଗଳା ଭାଷାରେ ଲିଖିତ ଶ୍ରୀପାଦ ବାବାଙ୍କ ପୂଜ୍ୟ ଗୁରୁଦେବ ପରମାରାଧ୍ୟ ସଂକୀର୍ତ୍ତନାଚାର୍ଯ୍ୟ ଶ୍ରୀଳ ରାମଦାସ ବାବାଜୀ ମହାରାଜଙ୍କ ବିରଚିତ ଓ ଗୁରୁଗତ ପ୍ରାଣ ଲଳିତା ସଖୀ ଦାସୀଙ୍କ ଆସ୍ୱାଦିତ ପରମ କରୁଣାମୟ ପତିତପାବନ, ନିତାଇ ଗୌରାଙ୍ଗ ପ୍ରେମ-ଭକ୍ତି ପାଗଳ ପରମାରାଧ୍ୟ ଶ୍ରୀ ଶ୍ରୀ ରାଧାରମଣ ଚରଣ ଦାସ ବାବାଜୀ (ବଡ଼ବାବାଜୀ) ମହାଶୟଙ୍କ ଅମୃତ ନିସ୍ୟନ୍ଦିନୀ ଲୀଳାଗ୍ରନ୍ଥ 'ଚରିତସୁଧା'

ପାଠ ହେଉଅଛନ୍ତି ଏବଂ ଉପସ୍ଥିତ ଭକ୍ତମଣ୍ଡଳୀ ସେଇ ଅପୂର୍ବ ଚରିତାବଳୀର ଅମୃତ ପାନ କରୁଥା'ନ୍ତି । ଏକାନ୍ତ ଶ୍ରବଣମୁଗ୍ଧ ବିହ୍ୱଳିତ ଅନ୍ତରରେ । ଏଇ ଅବସରରେ ଯଦୁବାବୁ, ବେଣୁବାବୁ ଓ ନରସିଂହ ନନ୍ଦ ଏଇ ଗ୍ରନ୍ଥ ପ୍ରଶସ୍ତି ଶୁଣାଇ ମୋତେ ଏଦ୍ୱାରା ଓଡ଼ିଆ ଅନୁବାଦ କରିବା ନିମନ୍ତେ ଅନୁରୋଧ କଲେ ।

ତାଙ୍କଠାରୁ ଏଇ ପବିତ୍ର ଗ୍ରନ୍ଥ ନେଇ ପାଠକରି ମୋର ଅନୁଭବ ହେଲା ଯେ ଅଶେଷ ମଙ୍ଗଳମୟ ପରମ କାରୁଣିକ ଆମ୍ଭର ଶ୍ରୀ ଶ୍ରୀ ପରମେଷ୍ଠୀ ଗୁରୁଦେବ ଶ୍ରୀଳ ଶ୍ରୀ ରାଧାରମଣ ଚରଣ ଦାସଦେବ ଭାରତର ନାନା ଦେଶ ପରିଭ୍ରମଣ ପୂର୍ବକ କଳିପାବନାବତାର ପରମଦୟାଳୁ ପ୍ରେମଦାତା ଶ୍ରୀ ଶ୍ରୀ ନିତାଇଗୌରଙ୍କ ଓ ଶ୍ରୀ ଶ୍ରୀ ରାଧାଗୋବିନ୍ଦ ଦେବଙ୍କର ନାମ ଲୀଳାଗୁଣ ଗାନ କରି ଅସଂଖ୍ୟ ନାସ୍ତିକ, ମଦ୍ୟପାୟୀ, ଅସତ୍ ଚରିତ୍ର, ପ୍ରାଣିହିଂସୁକ, ଦେବଦ୍ୱିଜଗୁରୁ ବୈଷ୍ଣବଦ୍ୱେଷୀ, କଳିହତ, ମାୟାମୁଗ୍ଧ, ଘୋର ପାଷାଣ୍ଡ ସଦୃଶ ଜୀବାଧମଗଣଙ୍କୁ ଭଗବତ୍ ମୁଖୀ, ବିଶୁଦ୍ଧ ଭକ୍ତି ପଥର ପଥିକ ଓ ଧର୍ମ ପରାୟଣ କରାଇ ଜଗତର ଅଶେଷ କଲ୍ୟାଣ ସାଧନ କରିଛନ୍ତି । ତାଙ୍କର ସେଇ ନିରୁପମ ଲୀଳାଖେଳା ତାଙ୍କର ପବିତ୍ର ଐଶ୍ୱର୍ଯ୍ୟ ମାଧୁର୍ଯ୍ୟ-ପରିପୂର୍ଣ୍ଣ ରସମୟ ଚରିତ୍ର ଓ ତାଙ୍କର ଉପଦେଶାବଳୀର ନିଗୁଢ଼ ରହସ୍ୟ ଉଦ୍‌ଘାଟିତ କରିଛି ଶ୍ରୀ ରାମଦାସ ବାବାଜୀ ମହାଶୟଙ୍କ ବିରଚିତ ପୁଣ୍ୟ ଗ୍ରନ୍ଥ ଏଇ ଚରିତସୁଧା ।

ସେ ନିଜକୃତ ପଦାବଳୀ ଗୀତଦ୍ୱାରା ଓଡ଼ିଶା ଓ ବଙ୍ଗଳା ପ୍ରଦେଶରେ ଯେଉଁ ସଂକୀର୍ତ୍ତନ ତରଙ୍ଗ ସୃଷ୍ଟି କରିଥିଲେ, ତାହାର ଚିରନ୍ତନ ପ୍ରତିଧ୍ୱନି ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରତି ଭକ୍ତ ବୈଷ୍ଣବ ହୃଦୟରେ ସ୍ପନ୍ଦିତ ହେଉଛି । ଏବଂ ତା'ର ପ୍ରଭାବ ଆଜି ପର୍ଯ୍ୟନ୍ତ ସର୍ବତ୍ର ସମଭାବରେ ଅନୁଭୂତ ହେଉଛି । ଶ୍ରୀ ଶ୍ରୀ ନିତ୍ୟାନନ୍ଦ ପ୍ରଭୁ କୃପାକରି ବାବାଜୀ ମହାଶୟଙ୍କୁ ନିଜ ଶକ୍ତି ପ୍ରଦାନ କରିଥିଲେ । ଯାହା ବଳରେ ସେ ପୂର୍ଣ୍ଣ ଭାବରେ ଯୁଗଧର୍ମ ନାମ ଓ ପ୍ରେମ ପ୍ରଚାର କରିବାକୁ ସମର୍ଥ ହୋଇଥିଲେ ।

**(ଭଜ) ନିତାଇଗୌର ରାଧେ ଶ୍ୟାମ ।**
**(ଜପ) ହରେ କୃଷ୍ଣ ହରେ ନାମ ॥**

ଏହି ମଧୁର ନାମ ସିଦ୍ଧ ମହାତ୍ମା ଶ୍ରୀ ଶ୍ରୀ ରାଧାରମଣ ଚରଣ ଦାସ ବାବାଜୀ ମହାଶୟଙ୍କ ଦ୍ୱାରା ପ୍ରଥମେ ପ୍ରବର୍ତ୍ତିତ । ଶ୍ରୀ ଶ୍ରୀ ଗୌରାଙ୍ଗ ମହାପ୍ରଭୁ ସର୍ବାବତାର ସାର । କଳି ଯୁଗଧର୍ମ ଯେ ହରିନାମ

ସଂକୀର୍ତ୍ତନ; ଏହା ସର୍ବ ଶାସ୍ତ୍ରରେ ଲିଖିତ ଅଛି । ମୃଦଙ୍ଗ, କରତାଳ ସଂଯୋଗରେ ଯେଉଁ ହରିନାମ ସଂକୀର୍ତ୍ତନ, ତାର ସୃଷ୍ଟିକର୍ତ୍ତା ଆମର ମହାପ୍ରଭୁ ଶ୍ରୀ ଗୌର ସୁନ୍ଦର । ଅନ୍ନଗତ ପ୍ରାଣ, ଅଳ୍ପାୟୁ, ଦୁର୍ବଳ, କଳିହତ ଜୀବର ଏକମାତ୍ର ଅବଲମ୍ବନ, ପରମ ମଙ୍ଗଳମୟ ଶ୍ରୀମନ୍ ମହାପ୍ରଭୁଙ୍କ ପ୍ରଚାରିତ ସେଇ ହରିନାମ ସଂକୀର୍ତ୍ତନ, ଯେତେବେଳେ କାଳ ପ୍ରଭାବରେ ବିଲୁପ୍ତ ପ୍ରାୟ ହୋଇ ଆସିଥିଲା, ଏହି ସମୟରେ ସିଦ୍ଧ ଚରଣ ଦାସ ବାବାଜୀ ମହାଶୟ ଆବିର୍ଭୂତ ହୋଇ ନିତାଇଚାନ୍ଦଙ୍କର ପୂର୍ଣ୍ଣକୃପା ଲାଭକରି ସେଇ ଯୁଗୋଚିତ ଧର୍ମ ହରିନାମ ସଂକୀର୍ତ୍ତନ ପୁନଃ ପ୍ରଚାର ପୂର୍ବକ ନିଜେ ବିଶୁଦ୍ଧ ବୈଷ୍ଣବ ଧର୍ମ ଯାଜନ ଏବଂ ଉପଦେଶ ଦ୍ୱାରା ଜଗତବାସୀଙ୍କୁ ଶିକ୍ଷା ପ୍ରଦାନ କରିଯାଇଛନ୍ତି ।

ଏ ସମସ୍ତ ବିଷୟ ଏଥିରେ ବିଶଦ ବର୍ଣ୍ଣିତ ଥିଲେ ହେଁ ଏହା କେବଳ ଶ୍ରୀଳ ରାଧାରମଣ ଚରଣ ଦାସ ଦେବଙ୍କ ମହନୀୟ ଲୀଳା-ଚରିତ ବର୍ଣ୍ଣନରେ ସୀମିତ ହୋଇନାହିଁ ବରଂ ଭକ୍ତି ସାଧନ ପିପାସୁ ପ୍ରତ୍ୟେକ ସାଧକଙ୍କ ପାଇଁ ଭଗବାନଙ୍କ ଲୀଳା, ରୂପ, ଗୁଣାନୁକୀର୍ତ୍ତନ ତଥା ଭକ୍ତି ଭଜନ ସାଧନ ପଦ୍ଧତି ଓ ପ୍ରେମ ଭକ୍ତିର ଗୂଢ଼ତମ ତତ୍ତ୍ୱ ଓ ରହସ୍ୟାବଳୀ ଏହି ଗ୍ରନ୍ଥରେ ଅତି ସରଳ, ସହଜ ଶୈଳୀରେ ଚମତ୍କାର ଭାବେ ବୁଝାଇ ଦିଆଯାଇଅଛି । ଏଣୁ ଏହି ଗ୍ରନ୍ଥର ପ୍ରସାର ଯେ ଏକ ପବିତ୍ର କର୍ତ୍ତବ୍ୟ ଏହା ମୋର ହୃଦବୋଧ ହେଲା ।

ମାତ୍ର ଏହି ସମୟରେ ମୋ ଜୀବନ ଯାତ୍ରା ପଥରେ ଏକ ଆକସ୍ମିକ ଝଡ଼ ସୃଷ୍ଟି ହେଲା । କର୍ମ କ୍ଷେତ୍ରରେ ଅପ୍ରତ୍ୟାଶିତ ବଦଳି କେବଳ ନୁହେଁ, ଯେଉଁ ପରମ ବଂଧୁମାନେ ଏ ପର୍ଯ୍ୟନ୍ତ ମୋର ଉଚ୍ଛ୍ୱସିତ ପ୍ରଶଂସା କରି ମୋତେ "ଅଜାତଶତ୍ରୁ"ର ସମ୍ମାନ ଦେଇଥିଲେ, ସେଇମାନେହିଁ ମୋତେ ନିନ୍ଦା କରିବାକୁ ଶତଜିହ୍ୱ ହୋଇ ଉଠିଲେ । ଭଗବତ୍ ଗୀତୋକ୍ତ "ଦୁଃଖେଷୁ ଅନୁଦ୍ୱିଗ୍ନ ମନାଃ ସୁଖେଷୁ ବିଗତ ସ୍ପୃହ" ହେବାର ସାଧନା ତ ଆମ ଜୀବନରେ ସମ୍ଭବ ହୋଇନି, ଏଣୁ ସ୍ୱାଭାବିକ ଭାବେ ଏଇ ଆକସ୍ମିକ ଝଡ଼ ଦ୍ୱାରା ଆନ୍ଦୋଳିତ ମନ ପ୍ରାଣ କିନ୍ତୁ ମୋର ଗୁରୁଦେବ ଶ୍ରୀପାଦବାୟାଙ୍କ ଶ୍ରୀମୁଖ ବାଣୀକୁ ଆଶ୍ରୟ କରି ଶାନ୍ତ ହେଲା । ବାବା କହନ୍ତି 'ବିପଦ ଆପଦ ପ୍ରଭୁଙ୍କର ଅନୁକୂଳ କୃପା' । ଏଥିରେ ବିଚଳିତ ହେବାର କିଛି ନାହିଁ । ଏଇ ଆଶ୍ୱାସନା ନେଇ ଏପରି ଅବସ୍ଥାରେ ଆକସ୍ମିକ ଭାବେ ପାଇଥିବା ଏଇ ଅପୂର୍ବ ଗ୍ରନ୍ଥ ଛଅଟିଯାକ ଭାଗ ଓଡ଼ିଆରେ ଅନୁବାଦ କରିବାର ଗୁରୁଦାୟିତ୍ୱ

ନେବା ନିମନ୍ତେ କୃତ ସଂକଳ୍ପ ହେଲି । ଭାବିଲି ବାସ୍ତବିକ ଯଦି ଏଇ ଗ୍ରନ୍ଥ ଓଡ଼ିଆରେ ଅନୁବାଦିତ ହୋଇ ପ୍ରକାଶିତ ହୁଅନ୍ତା, ତା'ହେଲେ ଏହା ଯେ ସମଗ୍ର ଓଡ଼ିଶାର ପ୍ରେମୀ ଭକ୍ତ ସମାଜକୁ ଏକ ମୂଲ୍ୟବାନ ଅବଦାନ ହୁଅନ୍ତା, ଏଥିରେ ସନ୍ଦେହ ନାହିଁ । ବଙ୍ଗଳା ଭାଷା ଜାଣି ନଥିବା ଭକ୍ତି ପ୍ରାଣ, ମା' ଭଉଣୀ ଓ କିଶୋର କିଶୋରୀମାନେ ମଧ୍ୟ ଆଗ୍ରହ ସହକାରେ ଏଇ ସହଜ ସରଳ ଗ୍ରନ୍ଥଟି ପାଠ କରି ପରମ ଆନନ୍ଦ ଲାଭ କରନ୍ତେ ଓ ପରମାର୍ଥିକ ପଥରେ ଅଗ୍ରସର ହୁଅନ୍ତେ ।

ଏ ସମସ୍ତ କାର୍ଯ୍ୟରେ ମହତ୍ କୃପାହିଁ ସମ୍ବଳ । ଏ ପ୍ରସଙ୍ଗ ଶୁଣି ପରମ କୃପାମୟ ମଦୀୟ ଗୁରୁଦେବ ଶ୍ରୀପାଦ ବାବା ଆନନ୍ଦ ମନରେ ଶୁଭେଚ୍ଛା ପ୍ରଦାନ କଲେ । ମୋ ସ୍ୱପ୍ନ ସଫଳ ପ୍ରଥମ ସୂଚନା ସ୍ୱରୂପ ଛଅଟି ଭାଗ ବଙ୍ଗଳା ଗ୍ରନ୍ଥକୁ ସଂକ୍ଷିପ୍ତ ଆକାରରେ ବାର ଭାଗ କରି ପ୍ରକାଶ କରିବାର ବାସନା ଅଛି । ମୋର ଶୁଭେଚ୍ଛୁ ସହଯୋଗୀ ପ୍ରତ୍ୟେକଙ୍କଠାରୁ ଏ ସଂପର୍କରେ ଉତ୍ସାହବାଣୀ ମୋତେ ଏ ପଥରେ ଅପୂର୍ବ ପ୍ରେରଣା ଦେଇଛି ।

ଏଣୁ ପରମାରାଧ୍ୟ ଶ୍ରୀ ଗୁରୁଦେବ ଶ୍ରୀ ଶ୍ରୀ ବାୟାଙ୍କର ଅଶୀତମ ଶୁଭ ଜନ୍ମ ତିଥିର ପବିତ୍ର ସ୍ମାରକୀ ଭାବେ ଆଜି ୩୧ ଡିସେମ୍ବର ୧୯୭୭ରେ "ଚରିତ ସୁଧା" ଗ୍ରନ୍ଥ ଓଡ଼ିଆ ପ୍ରଥମ ଭାଗ ଏଇ ପ୍ରଥମ ଆତ୍ମ ପ୍ରକାଶ" । ଆଶାକରେ ସହୃଦୟ ପାଠକବର୍ଗ ନିଜ ଉଦାରତା ଗୁଣରେ ଭାଷାର ଅସଂଲଗ୍ନତା ବା ଅଶୁଦ୍ଧି ସଂଶୋଧନ ପୂର୍ବକ ଶ୍ରୀପାଦ ବଡ-ବାବାଜୀ ମହାଶୟଙ୍କ ପ୍ରବର୍ତ୍ତିତ ଲୀଳା, ଆଚରିତ କାର୍ଯ୍ୟାବଳୀ ଶ୍ରୀମୁଖ ନିଃସୃତ ଉପଦେଶାମୃତକୁ ନିଜର ବ୍ୟକ୍ତିଗତ ଜୀବନରେ ପ୍ରୟୋଗ କରି ପରମଖାଣ୍ଡ ପ୍ରାପ୍ତ ହେଲେ ମୋର ଶ୍ରମ ସାର୍ଥକ ହେବ ।

ତାଙ୍କ ଇଚ୍ଛା ସର୍ବଦା ମଙ୍ଗଳମୟ ଏବଂ ତାହାହିଁ ପୂର୍ଣ୍ଣ ହେବ ଏ ଭରସା ଅଛି । କାରଣ ତାଙ୍କର ଆଶ୍ୱାସନା ବାଣୀ "କର୍ତ୍ତି କରଉଥାଏ ତୁହିଁ, ମୋ ବିନୁ ଅନ୍ୟଗତି ନାହିଁ ।"

ଶ୍ରୀଗୁରୁ ପ୍ରେମାନନ୍ଦେ ନିତାଇ ଗୌର ହରିବୋଲ

ଶ୍ରୀଗୁରୁ କୃପାଶ୍ରିତ

**ବୈଷ୍ଣବ**

# ଉତ୍ସର୍ଗ

ଶ୍ରୀ ଗୁରବେ ନମଃ



ପ୍ରେମଦାତା ପତିତପାବନ ପରମ କରୁଣାମୟ ଶ୍ରୀ ନିତ୍ୟାନନ୍ଦ ଗୌରାଙ୍ଗ ପ୍ରେମପାଗଳ, ପରମ ପ୍ରେମିକ ଭକ୍ତଶିରୋମଣି ଶ୍ରୀ ଶ୍ରୀମଦ୍ ରାଧାରମଣ ଚରଣ ଦାସ ଦେବଙ୍କ ପୁଣ୍ୟ ଚରିତ ସମ୍ବଳିତ ଏଇ 'ଚରିତ-ସୁଧା'ର ପ୍ରଥମ ଭାଗ ମୋର ପରମାରାଧ୍ୟ ଗୁରୁଦେବ ଶ୍ରୀମଦ୍ ନାମାଚାର୍ଯ୍ୟ ଶ୍ରୀ ଶ୍ରୀ 'ବାବୁାବାବା'ଙ୍କ ଶ୍ରୀକରକମଳରେ ତାଙ୍କର ଅଶୀତମ ପବିତ୍ର ଜୟନ୍ତୀ ଉତ୍ସବରେ ଅର୍ପଣ କଲି !

ବ୍ରମାଡ
**ବୈଷ୍ଣବ**

# ସୂଚିପତ୍ର



---

ପ୍ରକାଶ ଅପେକ୍ଷାରେ

# ଚରିତ-ସୁଧା

ଦ୍ୱିତୀୟ ଖଣ୍ଡ (ଯନ୍ତ୍ରସ୍ଥ)

# ଜନ୍ମସ୍ଥାନ ଓ ପିତୃ ପରିଚୟ

ଯଶୋହର ଜିଲ୍ଲା ଅନ୍ତର୍ଗତ ନଡ଼ାଲ ସବ୍‌ଡ଼ିଭିଜନ୍ ଅଧୀନ ଚିତ୍ରା ନଦୀର ପଶ୍ଚିମ ତୀରରେ, ନୁହେଁ କ୍ଷୁଦ୍ର, ନୁହେଁ ବୃହତ୍—ଗୋଟିଏ ଗ୍ରାମ—ନାମ ମହିଷଖୋଲା । ପଲ୍ଲୀଗ୍ରାମ ହେଲେ ହେଁ ସ୍ଥାନଟି ଅତି ମନୋରମ । ଗ୍ରାମରେ ଅନେକ ପୁଷ୍କରିଣୀ ଥିଲେ ମଧ୍ୟ ସମସ୍ତେ ପ୍ରାୟ ନଦୀ ଜଳ ବ୍ୟବହାର କରନ୍ତି । ଗ୍ରାମଟିର ପ୍ରାକୃତିକ ଶୋଭା ଅବଲୋକନ କଲେ ମନେହୁଏ ଯେପରି ଲକ୍ଷ୍ମୀ ଦେବୀ ମୂର୍ତ୍ତିମତୀ ହୋଇ ସେଠାରେ ବିରାଜ କରିଛନ୍ତି । ଶରତ ଓ ବସନ୍ତ ଋତୁରେ ଗ୍ରାମଟି ଅତି ରମଣୀୟ ଶୋଭା ଧାରଣ କରେ । ନଦୀର ଉପକୂଳବର୍ତ୍ତୀ ଭୂମି ଶାରଦୀୟ ଏବଂ ବାସନ୍ତୀ ଶସ୍ୟରେ ପରିପୂର୍ଣ୍ଣା । ଏହି ଗ୍ରାମର ପ୍ରାକୃତିକ ଶୋଭା ଦେଖିବା ମାତ୍ରେ ଚିତ୍ତବୃତ୍ତି ଯେପରି ଏକ ଅନିର୍ବଚନୀୟ ଅପ୍ରାକୃତ ରାଜ୍ୟକୁ ଚାଲିଯାଏ । ବୋଧହୁଏ, ପ୍ରକୃତି ଦେବୀ ଯେପରି ନାନାବିଧ ଭୂଷଣରେ ଭୂଷିତା ହୋଇ ଗ୍ରାମଟିର ଶୋଭା ବର୍ଦ୍ଧନ କରୁଛନ୍ତି । ଏହି ଗ୍ରାମରେ ଅନେକ ପ୍ରକାର ଜାତିର ବସବାସ ଥିଲେ ମଧ୍ୟ ଦକ୍ଷିଣ ରାଢ଼ୀ କୁଳୀନ କାୟସ୍ଥ ବସତି ସର୍ବାପେକ୍ଷା ଅଧିକ । ତନ୍ମଧ୍ୟରେ ଘୋଷ ମହାଶୟଙ୍କର ପରିବାରଟି ସମ୍ଭ୍ରାନ୍ତ ବଂଶୀୟ ଜମିଦାର । ଗ୍ରାମ-ବାସୀ ସମସ୍ତେ 'ବାବୁ' ବୋଲି ସମ୍ବୋଧନ କରିଥାଆନ୍ତି । —ସମସ୍ତେ ପ୍ରାୟ ତାଙ୍କର ଅନୁଗତ ।

ଏହି ଗ୍ରାମରେ **ଶ୍ରୀଯୁକ୍ତ ମୋହନ ଚନ୍ଦ୍ର ଘୋଷ** ମହାଶୟ ବାସ କରୁଥିଲେ । ତତ୍‌କାଳୀନ ପ୍ରଥାନୁସାରେ କୁଳୀନ ବଂଶୋଦ୍ଭବ ବ୍ୟକ୍ତିଗଣ ପ୍ରାୟ ବହୁ ବିବାହ କରୁଥିଲେ । ଏହିପରି

ବିବାହ ଯେ କେବଳ ଅର୍ଥଲାଭ ବା ଇନ୍ଦ୍ରିୟ ଚରିତାର୍ଥ କରିବା ଉଦ୍ଦେଶ୍ୟରେ କରୁଥିଲେ ତା'ନୁହେଁ, ଅନେକ ସମୟରେ କୁଳୀନ ସନ୍ତାନଗଣ ଅପରର କୁଳରକ୍ଷା ଲାଗି ଦୟାପରବଶ ହୋଇ ବହୁ ବିବାହ କରିବାକୁ ବାଧ୍ୟ ହେଉଥିଲେ । ବାବୁ ମୋହନଚନ୍ଦ୍ର ଘୋଷ ମହାଶୟ ଉପରୋକ୍ତ କାରଣର ବଶବର୍ତ୍ତୀ ହୋଇ ଗୋଟି ଗୋଟି କରି ଚାରିଟି ବିବାହ କରିବାକୁ ବାଧ୍ୟ ହୋଇଥିଲେ । ପ୍ରଥମେ ଯୋକା ଗ୍ରାମ ନିବାସୀ ପଦ୍ମଚରଣ ରାୟ ମହାଶୟଙ୍କର କନ୍ୟାର, ଦ୍ୱିତୀୟରେ ବନ ଗ୍ରାମ ନିବାସୀ ଶ୍ରୀଯୁକ୍ତ ରାମତନୁ ନାଗ ଚୌଧୁରୀ ମହାଶୟଙ୍କ କନ୍ୟା **ଶ୍ରୀମତୀ କନକ ସୁନ୍ଦରୀ ଦାସୀ**ଙ୍କର ଏବଂ ତୃତୀୟ ଥର ଘୋଡ଼ାଖାଲି ନିବାସୀ ଶ୍ରୀଯୁକ୍ତ ଗୌରଚନ୍ଦ୍ର ସରକାର ମହାଶୟଙ୍କର କନ୍ୟା ଶ୍ରୀମତୀ ମୁକ୍ତା ସୁନ୍ଦରୀ ଦାସୀଙ୍କର ପାଣିଗ୍ରହଣ କରିଥିଲେ । ଚତୁର୍ଥ ଥର ପୁନରାୟ ଉଜିରପୁରରେ ବିବାହ କଲେ । ମୋହନ ଚନ୍ଦ୍ର ଘୋଷ ମହାଶୟଙ୍କର ପ୍ରଥମା ପତ୍ନୀଙ୍କର କୌଣସି ସନ୍ତାନ ଆଦି ହେଲେ ନାହିଁ । ଦ୍ୱିତୀୟା କନକ ସୁନ୍ଦରୀଙ୍କର ଗର୍ଭରେ ତିନିଗୋଟି ପୁତ୍ର ଓ ଗୋଟିଏ କନ୍ୟା ଏବଂ ତୃତୀୟା ମୁକ୍ତା ସୁନ୍ଦରୀଙ୍କର ଗର୍ଭରେ ଗୋଟିଏ ମାତ୍ର କନ୍ୟା ଜନ୍ମ ହେଲେ । କନ୍ୟାଟିର ନାମ "ମୋକ୍ଷଦା ସୁନ୍ଦରୀ" । ଚତୁର୍ଥ ପତ୍ନୀଙ୍କର ଏକମାତ୍ର ପୁତ୍ର—ନାମ "କୁଞ୍ଜ ବିହାରୀ" ।

## ମାତାଙ୍କର ସ୍ୱଭାବ

ଘୋଷ ମହାଶୟଙ୍କର ଦ୍ୱିତୀୟା ପତ୍ନୀ କନକ ସୁନ୍ଦରୀ ଥିଲେ ଦେବୀ ପ୍ରକୃତିର—କ୍ରୋଧ କାହାକୁ କହନ୍ତି, ସେ ଆଦୌ ଜାଣନ୍ତି ନାହିଁ । ଶାସ୍ତ୍ର ବର୍ଣ୍ଣିତ ଶ୍ରୀବୃନ୍ଦାବନରେ ମା ଯଶୋମତୀଙ୍କର ସ୍ୱଭାବ

ଯେପରି, ଦେବୀ କନକ ସୁନ୍ଦରୀଙ୍କର ଚରିତ ସମ୍ପୂର୍ଣ୍ଣ ଭାବେ ଠିକ୍ ସେହିପରି ନହେଲେ ମଧ୍ୟ ଅନେକ ସାଦୃଶ୍ୟ ଲକ୍ଷିତ ହୁଏ । ଦେବୀ କନକ ସୁନ୍ଦରୀ ସର୍ବଦା ଅବଗୁଣ୍ଠନବତୀ ରହୁଥିଲେ ଏବଂ ଅତି ମୃଦୁଭାଷିଣୀ ଥିଲେ । ଦେହାନ୍ତକାଳ ପର୍ଯ୍ୟନ୍ତ କେବେ ହେଲେ କେହି ତାଙ୍କ ମୁଖରୁ ଉଚ୍ଚକଥା ଶୁଣିବାକୁ ପାଇନାହାଁନ୍ତି । ସେ ଏପରି ସରଳ ସ୍ୱଭାବା ଥିଲେ ଯେ ରନ୍ଧନ ସମୟରେ ବ୍ୟଞ୍ଜନରେ ଲବଣ ଦେଇଛନ୍ତି କି ନାହିଁ ତାହା ଅନ୍ୟକୁ ଜିଜ୍ଞାସା କରୁଥିଲେ । ସେ ଯେପରି ଏ କଳିକାଳର ସ୍ତ୍ରୀଲୋକ ନଥିଲେ । ସ୍ୱାମୀ ପ୍ରତି ଅଚଳା ଭକ୍ତି ଥିଲା । ଅଭାବ ବା ଅଭିଯୋଗ କେତେବେଳେ ଜଣାଇବାକୁ ହେଲେ ଠିକ୍ ଦେବତାଙ୍କପରି ସ୍ୱାମୀଙ୍କ ନିକଟକୁ ଯାଇ କରଯୋଡ଼ି ପ୍ରାର୍ଥନା କରୁଥିଲେ । ଦୁଃଖୀ କାଙ୍ଗାଳୀଙ୍କ ପ୍ରତି ଦେବୀ କନକ ସୁନ୍ଦରୀ ମୁକ୍ତହସ୍ତା ଥିଲେ । କୌଣସି ଭିକ୍ଷୁକ ଦ୍ୱାରସ୍ଥ ହେଲେ ଅତିଶୟ ବ୍ୟସ୍ତତା ସହକାରେ ସମ୍ମୁଖରେ ଯାହା ପାଉଥିଲେ ଭିକ୍ଷୁକକୁ ତା' ଦାନ କରି କୃତାର୍ଥ ବୋଧ କରୁଥିଲେ । ତାଙ୍କର ଅସୀମ ଗୁଣର କଥା ଲେଖି ବସିଲେ ଶେଷ ହେବନାହିଁ । ଉତ୍ତମ ଖାଦ୍ୟ ଦ୍ରବ୍ୟ ପାଇଲେ ପ୍ରତି ବେଶୀ ବାଳକ ବାଳିକାମାନଙ୍କୁ ଡାକ ଦେଉଥିଲେ ।

ମହିଷଖୋଲାର ଘୋଷ ମହାଶୟଙ୍କର ବଂଶ କ୍ରମେ ଏତେ ବିସ୍ତାର ଲାଭ କଲା ଯେ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ଗ୍ରାମ ଛାଡ଼ି ଅନ୍ୟତ୍ର ଚାଲିଯିବାକୁ ହୋଇଥିଲା । ଘୋଷ ବଂଶୀୟ ସମସ୍ତେ ଶାକ୍ତ ଥିଲେ । ଶାରଦୀୟା ଦୁର୍ଗାପୂଜା, ବାସନ୍ତୀ, କାଳୀ ପୂଜା ପ୍ରଭୃତି ସମସ୍ତ ପ୍ରକାର ଶକ୍ତିପୂଜା ବହୁ ବ୍ୟୟ ଓ ଆଡ଼ମ୍ବର ସହକାରେ କରୁଥିଲେ । ଏତଦ୍‌ବ୍ୟତୀତ ଦୋଳ, ରାସ, ଜନ୍ମାଷ୍ଟମୀ, ରାମ-ନବମୀ, ଝୁଲଣ ପ୍ରଭୃତି ବୈଷ୍ଣବୀୟ ପର୍ବମାନଙ୍କରେ ଯଥେଷ୍ଟ

ଅର୍ଥ ବ୍ୟୟ କରୁଥିଲେ । ଦୁର୍ଗାପୂଜା ଓ କାଳିପୂଜା ଉପଲକ୍ଷେ ବ୍ରାହ୍ମଣମାନଙ୍କୁ ଏବଂ ଢୋଲ, ବାସ, ଝୁଲଣାଦି ବୈଷ୍ଣବୀୟ ପର୍ବମାନଙ୍କରେ ଦୀନ ଦରିଦ୍ର ଓ ବୈଷ୍ଣବମାନଙ୍କୁ ଅତି ଆଦର ଯତ୍ନ ସହକାରେ ପରମ ପରିତୋଷ ଭାବରେ ସେବା କରୁଥିଲେ ।

## ଜନ୍ମ ବିବରଣୀ

ଶ୍ରୀମତୀ କନକ ସୁନ୍ଦରୀ ଦେବୀ ଅଷ୍ଟାଦଶ ବର୍ଷ ବୟସରେ ଗୋଟିଏ ସର୍ବ ସୁଲକ୍ଷଣ-ଯୁକ୍ତ ପୁତ୍ର ସନ୍ତାନ ଜନମ କରିଥିଲେ । ପୁତ୍ରଟିର ଶୁଭ ଅନ୍ନପ୍ରାଶନରେ ଘୋଷ ମହାଶୟ ଯଥେଷ୍ଟ ଅର୍ଥ ବ୍ୟୟ କରିଥିଲେ । ପୁତ୍ରଟିର ନାମକରଣ ହେଲା—"ଲାଲ୍‌ଗୋବିନ୍ଦ" । ଏହି ପ୍ରଥମ ପୁତ୍ରକୁ ଯେତେବେଳେ ଚାରିବର୍ଷ ହୁଏ, ଆଉ ଗୋଟିଏ ପୁତ୍ର ଜନ୍ମଲାଭ କଲେ । ତାର ନାମ ଦିଆହୁଏ—"ବିପିନ ବିହାରି" । ଦ୍ୱିତୀୟ ପୁତ୍ରର ବୟସ ଯେତେବେଳେ ତିନି ବର୍ଷ, ସନ **୧୨୭୦** ସାଲର **୨୯ ତାରିଖ** ଚୈତ୍ର ସଂକ୍ରାନ୍ତି ଶୁକ୍ଳା ତ୍ରୟୋଦଶୀ ତିଥି ଶୁଭ ବୃହସ୍ପତି ବାସରେ ଉଷା କାଳରେ ଘୋଷ ମହାଶୟଙ୍କର ତୃତୀୟ ପୁତ୍ର ଭୂମିଷ୍ଠ ହୁଏ ।

**୨୮ ତାରିଖ** ଚୈତ୍ର ମାସ ବୁଧବାର, ଅନ୍ଦାଜ ସାଢ଼େ ଚାରିଘଣ୍ଟା ସମୟରେ ଆକାଶରେ ଖଣ୍ଡେ ଶ୍ୱେତ ମେଘ ଦେଖାଦିଏ । କ୍ରମଶଃ କ୍ରମଶଃ ଶ୍ୱେତ ମେଘ ଖଣ୍ଡ ବୃହତ୍ ଆକାର ଧାରଣ କରି ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ କରିଦେଲା । ସେ ସମୟରେ ଦିବା କି ରାତ୍ରି ନିର୍ଣ୍ଣୟ କରିବା କଷ୍ଟକର ହୋଇପଡ଼ିଲା । ଭୟାନକ ବୃଷ୍ଟି ଆରମ୍ଭ ହେଲା । ବହୁ ସଂଖ୍ୟକ ବୃକ୍ଷ ଭୂମିସାତ୍ ହେଲା । ସୂତିକା ଗୃହ ଉପରେ ଗୋଟିଏ ଗୁଆ ଗଛ ଥିଲା । ହଠାତ୍ ତା'ଉପରେ

ଉପୃଙ୍କର ଶଙ୍କକର ବଜ୍ରପାତ ହୁଅନ୍ତେ, ବୃକ୍ଷଟି ଭସ୍ମୀଭୂତ ହୋଇ-
ଗଲା । ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ବୃକ୍ଷ ତଳେ ଥିବା ସୂତିକା
ଗୃହ ଏବଂ ତନ୍ନିକଟସ୍ଥ କୌଣସି ଲୋକ ଅଥବା ଅନ୍ୟ କୌଣସି
ବୃକ୍ଷାଦିର ବିନ୍ଦୁମାତ୍ର ଅନିଷ୍ଟ ହେଲା ନାହିଁ । ପରଦିନ ସକାଳେ
ଗ୍ରାମବାସୀ ବହୁ ସଂଖ୍ୟକ ଲୋକ ଏହି ବଜ୍ରପାତ କଥା ଶୁଣି ଯାଇ
ଦେଖିଲେ, ସେହି ବୃକ୍ଷତଳେ ଥିବା ସୂତିକା ଗୃହରେ ମୋହନ
ବାବୁଙ୍କର ଗୋଟିଏ ପରମ ସୁନ୍ଦର ପୁତ୍ର ଜନ୍ମଗ୍ରହଣ କରିଛି । ଏହା
ଦେଖି ସମସ୍ତେ ଅବାକ୍ ହୋଇଗଲେ ଏବଂ ପରସ୍ପର ମଧ୍ୟରେ
କୁହାକୁହି ହେବାକୁ ଲାଗିଲେ ଯେ ଏ ବାଳକଟି ନିଶ୍ଚୟ ଦିନେ
କୌଣସି ମହାପୁରୁଷ ହେବ, ତା' ନହେଲେ, ଦେଖ—ବହୁଦିନ
ଧରି ବର୍ଷା ହୋଇନାହିଁ, ଲୋକେ ଜଳାଭାବରେ କେତେ କଷ୍ଟ
ପାଇଲେ । କୃଷକଗଣ କୃଷିକର୍ମ ଛାଡ଼ି ହାହାକାର କଲେ । ଏଇ
ବାଳକଟି ଜନ୍ମହେଲା ପୂର୍ବରୁ ପୃଥିବୀକୁ ଶୀତଳ କରି ଦେଇଛି ।
ଆହୁରି ଦେଖ, କି ଆଶ୍ଚର୍ଯ୍ୟ ! ସୂତିକା ଗୃହ ଉପରେ ବଜ୍ରପାତ
ହୋଇ ଗୁଆଁ ଗଛଟି ଭସ୍ମୀଭୂତ ହୋଇଗଲା, କିନ୍ତୁ ସୂତିକା ଗୃହର
କୌଣସି ଅନିଷ୍ଟ ହେଲା ନାହିଁ ! ଏହା ଈଶ୍ୱରଙ୍କର ଅନୁଗ୍ରହ ଭିନ୍ନ
ଆଉ କ'ଣ ହୋଇପାରେ ? ଅନୁମାନ ହୁଏ, ଏହି ବୃକ୍ଷଟିରେ
କୌଣସି ଉପଦେବତାଙ୍କର ଅଧିଷ୍ଠାନ ଥିଲା । ଇନ୍ଦ୍ରଦେବ ତାହାଙ୍କୁ
ବିନାଶକରି ଶିଶୁଟିର ମଙ୍ଗଳ ବିଧାନ କଲେ । ସମସ୍ତେ ସର୍ବାନ୍ତଃ-
କରଣରେ ଆଶୀର୍ବାଦକର, ଯେପରି ଏଇ ବାଳକଟି ଚିରଜୀବୀ
ହୁଏ ।"

କ୍ରମେ ଘୋଷ ମହାଶୟଙ୍କ ଗୃହରେ ଶିଶୁଟିକୁ ଦେଖିବାଲାଗି
ଜନଗହଳି ହେଲା । ଶିଶୁଟି ଭୂମିଷ୍ଠ ହୋଇ ମାତୃ ସ୍ତନ୍ୟ ପାନ
କଲା ନାହିଁ । ଧାତ୍ରୀମାତା ବାଳକ ମୁଖରେ ମାତୃସ୍ତନ୍ୟ ଅର୍ପଣ

କରିବାକୁ ଅନେକ ଚେଷ୍ଟା କରି ମଧ୍ଯ ତା'ର ସକଳ ଚେଷ୍ଟା, ସକଳ ଯତ୍ନ ବ୍ୟର୍ଥ ହେଲା । ବାଳକ ମାତୃସ୍ତନ ସ୍ପର୍ଶ କଲାମାତ୍ରେ ବିକଟ ଚିତ୍କାର କରେ । ଦୁଇଦିନ ଗତ ହେଲା, ବାଳକ ମୁଖରେ କେହି କିଛି ଦେଇପାରିଲେ ନାହିଁ । ସମସ୍ତେ ବିଶେଷ ଚିନ୍ତାନ୍ୱିତ । ତୃତୀୟ ଦିନ ଅତି କଷ୍ଟରେ ସାମାନ୍ୟ ପରିମାଣର ଗୋଦୁଗ୍ଧ ଗରମ କରି ଶିଶୁଟିର ମୁଖରେ ଦିଆଗଲା । ଏଇପରି ଛଅଦିନ ବିତିଗଲା, ବୈଦ୍ୟ ନବପ୍ରସୂତ ଶିଶୁଟିର ଏହି ଅଭିନବ ବ୍ୟାଧିର ପ୍ରତିକାରର ଚେଷ୍ଟାକରି ବିଫଳ ହେବାରୁ ସମସ୍ତେ ଶିଶୁର ଜୀବନ ଆଶା ପରିତ୍ୟାଗ କଲେ । ଗୃହୁଁ ଗୃହୁଁ ଏହିପରି ଏକ ସପ୍ତାହ ଗତ ହେଲା । ସମସ୍ତଙ୍କର ଚିନ୍ତା ଓ ଉଦ୍‌ବେଗର, ସୀମା ରହିଲା ନାହିଁ । ସପ୍ତମ ଦିବସରେ ଜନୈକ ଗ୍ରାମବାସୀ ହରିଭକ୍ତ ପରାୟଣ ଶ୍ରୀଯୁକ୍ତ ରଜନୀକାନ୍ତ ଭଟ୍ଟାଚାର୍ଯ୍ୟ ମହାଶୟ ଶିଶୁଟିକୁ ଦେଖି କହିଲେ, "ମୋର ବିଶ୍ୱାସ, ଏଇ ଶିଶୁଟି ପରମ ଭକ୍ତ, ଶ୍ରୀହରିଙ୍କର ପୂଜା କରି ତାଙ୍କର ପ୍ରସାଦ ତା'ମୁଖରେ ଦେଲେ ନିଶ୍ଚୟ ବାଳକ ମାତୃସ୍ତନ୍ୟ ପାନ କରିବ ।" ମୋହନବାବୁ ଓ ଅନ୍ୟାନ୍ୟମାନେ ଏହି ନିଷ୍ଠାବାନ୍ ବ୍ରାହ୍ମଣ ବାକ୍ୟରେ ବିଶ୍ୱାସ କରି ଶ୍ରୀହରିଙ୍କ ପୂଜାର ସମଗ୍ର ଆୟୋଜନ କଲେ । ଭଟ୍ଟାଚାର୍ଯ୍ୟ ମହାଶୟ ବିଶେଷ ଭକ୍ତି ସହକାରେ ଦୟାମୟ ଭଗବାନ୍ ଶ୍ରୀହରିଙ୍କର ପୂଜାକରି ତାଙ୍କର ପ୍ରସାଦ ଓ ଚରଣାମୃତ ଶିଶୁଟିର ମୁଖରେ ଦେଲେ ଏବଂ ଚରଣାମୃତ ମାତୃସ୍ତନରେ ବୋଳିଦେବାକୁ ନିର୍ଦ୍ଦେଶ ଦେଲେ । ଶିଶୁଟି ଅତି ଆନନ୍ଦରେ ପ୍ରସାଦ ଓ ଚରଣାମୃତ ଗ୍ରହଣ କଲା । ଭାଗ୍ୟବତୀ ଜନନୀ ପୁତ୍ରକୁ କୋଳରେ ଘେନି ସ୍ତନକୁ ପୁତ୍ରମୁଖରେ ଦିଅନ୍ତେ ସେ ପ୍ରାଣଭରି ପରମ ଆନନ୍ଦରେ ସ୍ତନଦୁଗ୍ଧ ପାନକରି ତୃପ୍ତିଲାଭ କଲା ଏବଂ ଆତ୍ମୀୟସ୍ୱଜନମାନଙ୍କୁ ମଧ୍ଯ ପରମଆନନ୍ଦିତ କଲା ।

# କୋଷ୍ଠି ଗଣନା ଓ ନାମକରଣ

ଶ୍ରୀଯୁକ୍ତ ମୋହନବାବୁ ଗ୍ରହାଚାର୍ଯ୍ୟଙ୍କୁ ଡକାଇ ପୁତ୍ରର ଜାତକ ପତ୍ର (କୋଷ୍ଠୀ) ଲେଖାଇଲେ । ଗ୍ରହାଚାର୍ଯ୍ୟ ପ୍ରଥମ ଏବଂ ମଧ୍ୟମପୁତ୍ରର କୋଷ୍ଠୀଲେଖି ବିଶେଷ ଦୁଃଖିତ ଥିଲେ ; କାରଣ ଉଭୟଙ୍କର ପରମାୟୁ କାଳ ଅତି ଅଳ୍ପ ଥିଲା । ତୃତୀୟ ପୁତ୍ରର ଜାତକ ଗଣନାରେ ଆଚାର୍ଯ୍ୟଠାକୁରଙ୍କର ମନରେ ବିଶେଷ ଆନନ୍ଦ । ସେ ମୋହନବାବୁଙ୍କୁ କହିଲେ "ଆପଣଙ୍କର ଏଇ ପୁତ୍ର ଅତି ବିଦ୍ୱାନ, ଦାନଶୀଳ ଓ ଭକ୍ତ ହେବ । ଏଇ ବାଳକ ଆପଣଙ୍କର ବଂଶ ଉଜ୍ଜ୍ୱଳ କରିବ । ଏହାକୁ ଆପଣ ସାଧାରଣ ବାଳକ ବୋଲି ମନେକରିବେ ନାହିଁ । ଲଗ୍ନରେ ବୃହସ୍ପତିଙ୍କର ଅଧିଷ୍ଠାନ ହୋଇଛି । ଏ ବାଳକ ଭବିଷ୍ୟତରେ ଜଣେ ପଣ୍ଡିତ ଓ ବକ୍ତା ହେବ, ଏଥିରେ ସନ୍ଦେହ ନାହିଁ ।"

କ୍ରମେ ସପ୍ତମ ମାସରେ ବାଳକର ଅନ୍ନପ୍ରାଶନ ଓ ନାମକରଣ ହେଲା । ଦେଶାଚାର ଅନୁଯାୟୀ ଅନ୍ନପ୍ରାଶନ ସମୟରେ ଗୋଟିଏ ଥାଳରେ କିଛି ମିଷ୍ଟାନ୍ନ, ନାନାବିଧ ଖେଳଣା, ଖଣ୍ଡିଏ ଚଣ୍ଡୀ ଏବଂ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ରଖି ବାଳକର ପ୍ରବୃତ୍ତି ପରୀକ୍ଷା କରିବା ଲାଗି ତା'ର ସମ୍ମୁଖରେ ରଖାଗଲା । ବାଳକ ହସି ହସି ପ୍ରଥମେ ଥାଳ ଉପରୁ ଚଣ୍ଡୀକୁ ବାମ ହସ୍ତରେ ଧାରଣ କରି ପରେ ଥାଳରୁ ଗୋଟି ଗୋଟି ମିଷ୍ଟାନ୍ନ ଆଣି ଉପସ୍ଥିତ ରମଣୀମାନଙ୍କୁ ବାଣ୍ଟିବାକୁ ଲାଗିଲା । ଉପସ୍ଥିତ ରମଣୀମାନେ କହିଉଠିଲେ, "ଏ ବାଳକ ପରମ ଭକ୍ତ ଓ ଦାତା ଶିରୋମଣି ହେବ ଏବଂ ଲୋକମାନଙ୍କୁ ଅକାତରେ ଅନ୍ନଦାନ କରିବ ।" ବାଳକର ନାମକରଣ ହେଲା **"ରାଇଚରଣ"** ଏହାର ଦୁଇବର୍ଷ ପରେ ମୋହନ ବାବୁଙ୍କର

ଆଜ୍ଞ ଗୋଟିଏ ପୁତ୍ର ସନ୍ତାନ ଜନ୍ମ ହେଲ । ଏଇଟି ତାଙ୍କର କନିଷ୍ଠ ପୁତ୍ର, ଏହାର ନାମ ରଖାଗଲା, "ରାଖାଲ ଦାସ" । କନିଷ୍ଠ ପୁତ୍ର ଜନ୍ମର ଦୁଇବର୍ଷ ପରେ ତାଙ୍କର ଗୋଟିଏ କନ୍ୟାସନ୍ତାନ ଜନ୍ମେ । କନ୍ୟାଟିର ନାମ ରଖାହେଲ "ବସନ୍ତକୁମାରୀ" ।

# ପିତା ଓ ଭ୍ରାତାଙ୍କର ପରଲୋକ

ମୋହନ ବାବୁଙ୍କର ତୃତୀୟ ପୁତ୍ର ରାଇଚରଣଙ୍କର ବୟସ ଯେତେବେଳେ ପାଞ୍ଚବର୍ଷ, ସେତେବେଳେ ତାଙ୍କର ପିତା ଆତ୍ମୀୟ ସ୍ୱଜନଗଣଙ୍କୁ ଶୋକସାଗରରେ ଭସାଇ ଦେଇ ପରଲୋକ ଗମନ କଲେ । ପିତୃ ବିୟୋଗ ସମୟରେ ଜ୍ୟେଷ୍ଠପୁତ୍ରର ବୟସ ମାତ୍ର ଦ୍ୱାଦଶବର୍ଷ । ବାବୁ ମୋହନଚନ୍ଦ୍ର ଘୋଷ ମହାଶୟଙ୍କର ଜଣେ କନିଷ୍ଠ ସହୋଦର ଥିଲେ । ତାଙ୍କର ନାମ ଈଶ୍ୱର ଚନ୍ଦ୍ର ଘୋଷ । ସେ ଏବଂ ଅନ୍ୟାନ୍ୟ ଜ୍ଞାତିବର୍ଗ ପିତୃହୀନ ବାଳକମାନଙ୍କର ଅଭିଭାବକ ହୋଇ ସେମାନଙ୍କର ରକ୍ଷଣାବେକ୍ଷଣ ଏବଂ ଶିକ୍ଷା ବ୍ୟବସ୍ଥାର ଦାୟିତ୍ୱ ଗ୍ରହଣ କଲେ । ବାଳକ ରାଇଚରଣଙ୍କର ପିତୃବିୟୋଗର ଦୁଇବର୍ଷ ପରେ ତାଙ୍କର ମଧ୍ୟମ ଭ୍ରାତା ବିପିନବିହାରୀ ଦଶବର୍ଷ ବୟସରେ ପରଲୋକ ଗମନ କଲେ । ପତିହୀନା ଓ ପୁତ୍ରଶୋକାତୁରା ଦେବୀ କନକସୁନ୍ଦରୀଙ୍କର ଅପାର ସ୍ନେହରାଶି ତୃତୀୟ ପୁତ୍ର ରାଇଚରଣ ଉପରେ ପତିତ ହେଲ । ଏଇପରି ଦୁଇବର୍ଷ ଅତୀତ ନ ହେଉଣୁ ରାଇଚରଣଙ୍କର ସର୍ବଜ୍ୟେଷ୍ଠ ଭ୍ରାତା ଲାଲ୍‌ଚାନ୍ଦ ଷୋଳବର୍ଷ ବୟସରେ ଏବଂ ସର୍ବକନିଷ୍ଠ ଭ୍ରାତା ରାଖାଲ ଦାସ ସାତବର୍ଷ ବୟସରେ ପରଲୋକ ଗମନ କଲେ । ଦେବୀ କନକସୁନ୍ଦରୀଙ୍କର କୋମଳହୃଦୟ ପୁତ୍ରଶୋକରେ ଅତ୍ୟନ୍ତ

ବ୍ୟଥିତ ହେଲା । ସେତେବେଳେ ତାଙ୍କର ଏକମାତ୍ର ନବମ ବର୍ଷୀୟ ବାଳକ ରାଇଚରଣ ଏବଂ ପଞ୍ଚମବର୍ଷୀୟା ବାଳିକା ବସନ୍ତକୁମାରୀ ଏଇ ଦୁଇଟି ମାତ୍ର ସନ୍ତାନ ରହିଲେ । ମୁହୂର୍ତ୍ତେ ହେଲେ ବି ସେ ରାଇଚରଣଙ୍କୁ ନିଜଚକ୍ଷୁ ଅନ୍ତରାଳକୁ ଛାଡ଼ିଲେ ନାହିଁ । ରାଇଚରଣ ମୁହୂର୍ତ୍ତେ କରଛଡ଼ା ହେଲେ ସେ ପାଗଳୀ ପରି ତାଙ୍କର ଅନୁଧାବନ କରୁଥିଲେ ।

## ପାଠ୍ୟ ବ୍ୟବସ୍ଥା

ରାଇଚରଣ ସ୍କୁଲରେ ପଢ଼ିବା ସଙ୍ଗେ ସଙ୍ଗେ ସାଂସାରିକ କାର୍ଯ୍ୟ ମଧ୍ୟ ଦେଖିବାକୁ ପଡ଼ୁଥିଲା । ତାଙ୍କର ପ୍ରକୃତି ଅତିଶୟ ଚଞ୍ଚଳ ହେଲେ ହେଁ ଶ୍ରେଣୀରେ ସର୍ବାପେକ୍ଷା ଉଚ୍ଚସ୍ଥାନ ଅଧିକାର କରୁଥିଲେ । ବାର ତେର ବର୍ଷର ବାଳକ ରାଇଚରଣ ଉଦ୍ଧତର ଶିରୋମଣି କିନ୍ତୁ ସର୍ବଦା ପରର ଉପକାର ଲାଗି ବ୍ୟସ୍ତ ରହୁଥିଲେ । ଦିନେ ସ୍କୁଲରୁ ଘରକୁ ଫେରିବା ସମୟରେ ଅନ୍ୟ-ଜଣେ ଛାତ୍ରର ଛତା ନଥିବା ଦେଖି ତାକୁ ନିଜର ଛତାଟି ଦେଇ ନିଜେ ଖରା ସହି ସହି ଘରକୁ ଫେରିଗଲେ ।

ଆଉ ଗୋଟିଏ ଦିନ ସ୍କୁଲ ଫେରିବା ବେଳର ଘଟଣା । ଗୋଟିଏ ଗରିବ ଲୋକ ଶୀତବସ୍ତ୍ର ଅଭାବରେ ବଡ଼ କଷ୍ଟ ପାଉଛି । ତା'ର କଷ୍ଟ ରାଇଚରଣ ସହ୍ୟକରି ନ ପାରି ଅତି ଆଗ୍ରହରେ ସହିତ ନିଜର ମୂଲ୍ୟବାନ୍ ଶୀତବସ୍ତ୍ରଖଣ୍ଡି ଦେହରୁ କାଢ଼ି ତା'ର ଦେହକୁ ଆବରଣ କରି ନିଜେ ନଗ୍ନଗାତ୍ରରେ ଶୀତରେ କମ୍ପି କମ୍ପି ଘରକୁ ଫେରିଲେ । ମାଆ ରାଗିବେ ଭାବି ମାଆଙ୍କୁ କହିଲେ, "ମାଆ ! ସ୍କୁଲ ପଡ଼ିଆରେ ଖେଳୁଥିବାବେଳେ ମୋର ବସ୍ତ୍ରଖଣ୍ଡିକ କିଏ ନେଇ ଯାଇଛି ।" ମାଆ କନକସୁନ୍ଦରୀ ଅତିଶୟ ସରଳା । ପୁତ୍ରଙ୍କ

ଏଇ କଥା ଶୁଣି କାନ୍ଦି କାନ୍ଦି ଅଧିର ଭାବେ କହିଲେ, "ଆରେ ମୋର ଦୁଃଖିନୀର ଧନ, ଅନ୍ଧର ଲଉଡ଼ି । ମୋ ରାଇଚରଣ ସଙ୍ଗେ କିଏ ଏପରି ଶତ୍ରୁତା ଆଚରଣ କଲା ? ମାଆ ଜଗଦମ୍ବେ ! ଏ ଜଗତରେ ଯେ ମୋର ଆଉ କେହିନାହିଁ । ସେଇ ଯେ ମୋର ଅଞ୍ଚଳର ନିଧି । ସିଏ ଥାଉ ଥାଉ ମୋତେ ନେଇଯାଆ ମାଆ ! ମୋର ଆଉ ବଞ୍ଚିବାର ଆଶାନାହିଁ ।" ମୁହୂର୍ତ୍ତିକ ପରେ ଶିହରି ଉଠି ପୁଣି କହିବାକୁ ଲାଗିଲେ, "ନା, ନା, ମା ! ମୁଁ ଯଦି ବର୍ତ୍ତମାନ ଚାଲିଯାଏ, ମୋର ଜୀବନ ସର୍ବସ୍ୱ ରାଇଚରଣ, କାହା ମୁଖକୁ ଚାହିଁ ରହିବ ? ସଂସାରରେ ମୋର ଯେପରି ରାଇଚରଣ ଭିନ୍ନ ଆଉ କେହିନାହିଁ, ତା'ର ମଧ୍ୟ ସେଇପରି ମୋ ଭିନ୍ନ ଆଉ କିଏ ଅଛି ? ମୋର ରାଇଚରଣ ଟିକିଏ ବଡ଼ ହୋଇଯାଉ, ସେତେବେଳେ ମୋତେ ନେଇଯିବ ମା ।" ଏଇପରି ବାତ୍ସଲ୍ୟ ରସରେ ବିଗଳିତ ହୋଇ କେତେ କ'ଣ କହିଯାଉଥିଲେ ।

ପରେ ରାଇଚରଣଙ୍କର ସହପାଠୀମାନେ ଯେତେବେଳେ ହସି ହସି କହିଲେ, "ନା ମା, ରାଇଚରଣ ମିଥ୍ୟା କଥା କହୁଛି । କାଲି ସ୍କୁଲରୁ ଫେରିବା ସମୟରେ ଗୋଟିଏ ଗରିବ ଲୋକ ଶୀତରେ କଷ୍ଟ ପାଉଥିବା ଦେଖି ତାକୁ ନିଜର ବସ୍ତ୍ର ଖଣ୍ଡି ଦେଇ ଆପଣଙ୍କୁ ଏପରି କହୁଛି ।" କନକସୁନ୍ଦରୀ ଦେବୀ ରାଇଚରଣଙ୍କୁ ହସି ହସି ପଚାରିଲେ, "ଆରେ ଧନ ! ଗରିବକୁ ଦେଇଛୁ ? ବେଶ୍ କରିଛୁ । ମା ଜଗଦମ୍ବା ଆହୁରି ଦେବେ ।" ମାତା ପୁତ୍ରଙ୍କର ଏତାଦୃଶ ବ୍ୟବହାର ଦର୍ଶନରେ ସମସ୍ତେ ଅବାକ୍ । ଯେପରି ଦୟାମୟୀ ଜନନୀ, ସେହିପରି ଦାନଶୀଳ ପୁତ୍ର ।

ରାଇଚରଣ ଦିନେ ସ୍କୁଲରୁ ଫେରୁଥିବାବେଳେ ଦେଖିଲେ ଯେ ଗୋଟିଏ ବୃଦ୍ଧ ରାସ୍ତାକଡ଼ରେ ଜ୍ୱର ରୋଗରେ ଆକ୍ରାନ୍ତ

ହୋଇଛି । ଗୃହଜଳ, ଡାଲ ଯାହା ବଜାରରୁ କିଣି ଆଣିଥିଲ, ତାକୁ ନେଇ ଘରକୁ ଫେରିବା, ତା'ପକ୍ଷରେ ଅତି କଷ୍ଟକର ହୋଇ-ପଡ଼ିଛି, ରାସ୍ତା କଡ଼ରେ ବସି କାନ୍ଦୁଛି । ରାଇଚରଣ ତା'ର ଦୁଃଖ ଦେଖି ତା'ର ବୋଝଟିକୁ ନିଜ ମୁଣ୍ଡ ଉପରେ ରଖି ଆସ୍ତେ ଧରି ଉଠାଇଲେ । ବୃଦ୍ଧଟି ଅତିଶୟ ବ୍ୟସ୍ତ ହୋଇପଡ଼ି କହିଲା, "ବାବୁ ! ଆପଣ ମୋ ବୋଝଟିକୁ ମୁଣ୍ଡରେ ବୋହିଲେ ? ମୁଁ ପରା ନୀଚ ଜାତି (ଧୋବା) ।" ରାଇଚରଣ କହିଲେ, "ତୁମେ ଯେଉଁ ଜାତିର ହୁଅ, ସେ ପରିଚୟରେ ମୋର ପ୍ରୟୋଜନ ନାହିଁ ; ତୁମେ ପିଡ଼ୀତ । ମୁଁ ତୁମକୁ ତୁମ ଘରେ ପହଁଞ୍ଚାଇ ଦେଇ ଆସିବି । ଚାଲ— ।" ଏଇ କାରଣ ଯୋଗୁ ରାଇଚରଣଙ୍କର ଘରେ ପହଞ୍ଚିବାକୁ ବିଳମ୍ବ ହେଲା । ଏଣେ ସ୍ନେହମୟୀ ଜନନୀ କାନ୍ଦି କାନ୍ଦି ଅସ୍ଥିର । କେତେକ୍ଷଣ ପରେ ରାଇଚରଣ ଘରେ ପହଞ୍ଚିଛନ୍ତି । ମା ତାଙ୍କର ହାତଧରି ପ୍ରତିବେଶୀମାନଙ୍କର ଘର ଘର ବୁଲି କହିବାକୁ ଲାଗିଲେ, "ଏଇ ଦେଖ, ମୋର ରାଇଚରଣ ଘରକୁ ଫେରିଆସିଛି ।" ମା କନକ ସୁନ୍ଦରୀ ଏତେ ସରଳା ଯେ, ପୁତ୍ର ଯଦି କିଛି ଟଙ୍କା ପଇସା ତାଙ୍କ ହାତରେ ଦିଅନ୍ତି, ତେବେ ସେ ଭାବି ଭାବି ଅସ୍ଥିର ହୋଇପଡ଼ି କହନ୍ତି, "ରାଇଚରଣ ମୋ ହାତରେ ଏତେ ଟଙ୍କା ଦେଲା, ମୁଁ କେଉଁଠାରେ ଏହାକୁ ରଖିବି ? ଏତେ ଟଙ୍କା କଉଡ଼ି ମୋର କିଏ ଖାଇବ ? ରାଇଚରଣ ମୋର ରାଜା ହେବ, ହାତୀ, ଘୋଡ଼ା, ପାଲିଙ୍କି ଚଢ଼ି ବୁଲିବ ।" ଏଇ ହେଉଛି ମାତୃ ସ୍ନେହର ପରାକାଷ୍ଠା ।

ରାଇଚରଣ ବାଲ୍ୟକାଳରୁ ବଡ଼ ସଙ୍ଗୀତପ୍ରିୟ ଥିଲେ । ଯେଉଁଠାରେ ସଙ୍ଗୀତ ଆସର, ସେ ସ୍ଥାନକୁ ଯିବାକୁ ତାଙ୍କର ଖୁବ୍ ଇଚ୍ଛା । ଭିକାରୀ, ବୈଷ୍ଣବମାନଙ୍କର ଗୀତ ଶୁଣିବାକୁ ତାଙ୍କର ଖୁବ୍

ଆଗ୍ରହ କରନ୍ତୁ ପୁବା ଅବସ୍ଥାର ଭିକାରୀ ଦେଖିଲେ, ସେ କହୁଥିଲେ, "ଆରେ ବାବା, ଏ ଜନମଟାକୁ ଏମିତି ଏମିତି କଟେଇଦେବ ? ପରର ଉପକାର କର, ମନୁଷ୍ୟ ଜୀବନ ସାର୍ଥକ କର । ଅନ୍ତତଃ ଯଦି ତୁମେ ଗୃହକର୍ମ କର, ଦଶଜଣଙ୍କୁ ତ ପ୍ରତିପାଳନ କରିପାରିବ ? ପରମୁଖାପେକ୍ଷୀ ହୋଇ ନିଜ ଉଦର ପୂରଣ ଲାଗି ଦ୍ୱାର ଦ୍ୱାର ବୁଲି ଭିକ୍ଷା କରିବା କି ପ୍ରୟୋଜନ ?" ଇତ୍ୟାଦି ନାନା ବାକ୍ୟରେ ଭର୍ତ୍ସନା କରୁଥିଲେ । ଗିରିଚରଣ ବାଳକ ହେଲେ ହେଁ ସ୍ୱଭାବରେ ଏବଂ ବୁଦ୍ଧି ବ୍ୟବହାରରେ ବୃଦ୍ଧ ସମ ସମସ୍ତଙ୍କୁ ଉପଦେଶ ବାକ୍ୟ କହୁଥିଲେ । ପରର ଅନିଷ୍ଟ ଚିନ୍ତା କଦାପି ତାଙ୍କ ମନ ମଧ୍ୟରେ ସ୍ଥାନ ପାଉ ନଥିଲା । କୌଣସି ଧର୍ମ ବା ସମ୍ପ୍ରଦାୟ ପ୍ରତି ତାଙ୍କର ବିଦ୍ୱେଷ ଭାବ ନଥିଲା । କାହାର କୁତ୍ସା ରଟନା ତାଙ୍କର ସ୍ୱଭାବ ବିରୁଦ୍ଧ ଥିଲା । ଗିରିଚରଣ ବାବୁଙ୍କର ବୟସ ଯେତେବେଳେ ପନ୍ଦର ବର୍ଷ, ସେତେବେଳେ ଦେବୀ କନକସୁନ୍ଦରୀ ପୁତ୍ରର ଶୁଭ ବିବାହ ଲାଗି ଉତ୍‌କଣ୍ଠିତା ହୋଇ ଉଠିଲେ । ଏହାଶୁଣି ଗିରିଚରଣ ବାବୁ ଜନନୀଙ୍କୁ ବୁଝାଇ କହିଲେ,—"ମା, ବସନ୍ତ ବିବାହ ଯୋଗ୍ୟା ହୋଇଅଛି, ଆଗେ ତା'ର ବିବାହର ଉଦ୍ୟୋଗ ହେଉ । ପରେ ମୋ ବିଷୟ ଚିନ୍ତା କରିବ ।" ମା ଆଉ କଥା କହି ପାରିଲେ ନାହିଁ । କ୍ରମେ ବସନ୍ତକୁମାରୀର ବୟସ ଯେତେବେଳେ ବାରବର୍ଷ ଅତିକ୍ରମ କଲା, ସେତେବେଳେ ସେ ବିଶେଷ ଚିନ୍ତିତା ହେଲେ ।

ଯଶୋହର ଜିଲ୍ଲା ଅନ୍ତର୍ଗତ ସିଙ୍ଗା ନିବାସୀ ଶ୍ରୀଯୁକ୍ତ ବାବୁ ରଜନୀକାନ୍ତ ବସୁ ମହାଶୟଙ୍କ ସଙ୍ଗେ ବସନ୍ତକୁମାରୀର ଶୁଭବିବାହ ସ୍ଥିର ହେଲା । ସନ୍ତାନର ବିବାହ ଜନିତ ସୁଖ ମା କନକ-ସୁନ୍ଦରୀଙ୍କର ଜୀବନରେ ଏଇ ହେଉଛି ପ୍ରଥମ । ସେ ସ୍ଥିରକଲେ ପୁତ୍ରର

ଗର୍ଭଧାରଣୀ ହେଲେ ହେଁ କୌଣସି ପୁତ୍ରର ବିବାହ ଆଦି କାର୍ଯ୍ୟରେ ଆନନ୍ଦ ଅନୁଭବ କରିବା ଏ ପର୍ଯ୍ୟନ୍ତ ତାଙ୍କ ଭାଗ୍ୟରେ ଯୁଟି ନଥିଲା । କାରଣ ତାଙ୍କର ତିନିପୁତ୍ର ଅତି ଅଳ୍ପବୟସରେ ମୃତ୍ୟୁ ବରଣ କରିଥିଲେ । ପତିପୁତ୍ର ଶୋକସନ୍ତପ୍ତା ମା' କନକସୁନ୍ଦରୀ କନ୍ୟାର ବିବାହ ଉତ୍ସବରେ ପରମ ଆନନ୍ଦିତା ହୋଇ ସମସ୍ତଙ୍କୁ ସାଦର ସମ୍ଭାଷଣରେ ତୁଷ୍ଟ କଲେ । ଆନନ୍ଦମୟୀ ମା ଯେପରି ସାକ୍ଷାତ୍ ଅନ୍ନପୂର୍ଣ୍ଣା । ଯିଏ ଆସୁଥିଲେ ତାଙ୍କୁ ମା କହୁଥିଲେ, "ତୁମର ତ ଘର, ତୁମ ହାତରେ ତୁମେ ଖାଅ । ମୁଁ ତ ପ୍ରାୟ ପାଗଳ, ଏହି ମୁହୂର୍ତ୍ତରେ କହି ପର ମୁହୂର୍ତ୍ତରେ ଭୁଲିଯାଉଛି । ଗୌରଚରଣ ମୋର ବାଳକ, ତାର ତ ଆଉ କେହିନାହିଁ । ତୁମେ ଦେଖିଶୁଣି ତାର ହାତକୁ ଦି'ହାତ କରିଦିଅ । ମୁଁ ଦେଖି ମୋର ଚକ୍ଷୁ ସଫଳ କରେ । ଆଜି ଯଦି ମୋର ନୀଳଗ୍ରୀବ (ଜ୍ୟେଷ୍ଠପୁତ୍ର) ଥାଆନ୍ତା, ତେବେ ଆଉ କ ଚିନ୍ତା ଥିଲା ?" ଏହି କଥା କହିକହି କାନ୍ଦି ଉଠିଲେ । ପ୍ରତିବେଶିନୀମାନେ ତାଙ୍କର ହାତଧରି କହିଲେ, "ଛି, ଆଜି ଏ ଆନନ୍ଦର ଦିନେ ତୁମ ଆଖିରେ ପୁଣି ଲୁହର ଧାର ? ଏଥିରେ ଅମଙ୍ଗଳ ହେବ ଯେ । ତୁମର ଗୌରଚରଣ ବଞ୍ଚିରହୁ । ଏଇ ଏକପୁତ୍ରରୁ ତୁମେ ଯେ ଶତପୁତ୍ର ଲାଭକରିବ ।" ଏଇପରି ନାନାବିଧ ପ୍ରବୋଧ ବାକ୍ୟରେ ପ୍ରତିବେଶିନୀମାନେ ଦେବୀ କନକସୁନ୍ଦରୀଙ୍କୁ ସାନ୍ତ୍ୱନା ଦେଇଥିଲେ ।

ଭଗିନୀର ଶୁଭବିବାହରେ ଗୌରଚରଣ ବାବୁ ବେଶ୍ ଖରଚ କଲେ । ବସନ୍ତକୁମାରୀଙ୍କୁ ବିଦାୟଦେବାକୁ ଯାଇ ମାଆ କାନ୍ଦିକାନ୍ଦି ଅଧିର ହୋଇ ପଡ଼ିଲେ । ସେ କାନ୍ଦିକାନ୍ଦି କହିବାକୁ ଲାଗିଲେ, "ଆଜି ମୋର ଘର ଶୂନ୍ୟ ହୋଇଗଲା । ଗୌରଚରଣ ମୋର ପାଗଳପୁତ୍ର । ଦଣ୍ଡେ ହେଲେ ସେ ଘରେ ରହେନା । ମୁଁ ବସନ୍ତକୁ

ନେଇ ଶାନ୍ତରେ ରହିଥିଲି । ବସନ୍ତ ମୋର ଘରର ଯେପରି ଗୃହଲକ୍ଷ୍ମୀ ଥିଲି । ମୋତେ କିଛି ହେଲେ କାମ କରିବାକୁ ଦେଉ ନଥିଲି । ଏବେ ଆଉ ମୋତେ କିଏ ଦେଖିବ ? କିଏ ବା ରାଇଚରଣ ଲାଗି ସ୍କୁଲକୁ ଭାତ ପଠାଇବ ?" ଉପସ୍ଥିତ ପ୍ରତିବେଶିମାନେ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ଅଳ୍ପଦିନରେ ରାଇଚରଣଙ୍କୁ ବିବାହ ଦେଇଦେଲେ ଘରକୁ ତ ବୋହୂ ଆସିବ, ଆଉ ଚିନ୍ତା କ'ଣ ? ଝିଅ ତ ଘରେ ଆଉ ବେଶିଦିନ ରହିନଥାନ୍ତା, ପରର ଧନ ଯେତେଶୀଘ୍ର ପରକୁ ଦେଇଦେଲେ ମଙ୍ଗଳ ।"

ରାଇଚରଣ ବାବୁଙ୍କର ନିଜମାମୁଁ ଘର ବିନଗ୍ରାମ । ସେ ଅବକାଶ ପାଇଲେ ବିମାତାର ପିତ୍ରାଳୟ ଘୋଡ଼ାଖାଲିକୁ ଯାଆନ୍ତି । ତାଙ୍କର ଏକ ବୈମାତ୍ରେୟ ଭଗିନୀ ଘୋଡ଼ାଖାଲିରେ ତାଙ୍କର ମାମୁଁଘରେ ଥାଆନ୍ତି । ସେ ବିଧବା । ତାଙ୍କୁ ରାଇଚରଣ ବାବୁ ନିଜ ଘରକୁ ଅଣାଇଲେ । ସେତେବେଳେ ସଂସାରର ସମସ୍ତ ଭାର ତାଙ୍କର ଉପରେ ପଡ଼ିଲା । ରାଇଚରଣ ବାବୁଙ୍କର ଏଇ ବୈମାତ୍ରେୟ ଭଗିନୀଙ୍କର ନାମ ମୋକ୍ଷଦାସୁନ୍ଦରୀ ।

## ବିବାହ

ଗୁହୁଁ ଗୁହୁଁ ଦୁଇବର୍ଷ ବିତିଗଲା । ଅନେକ ଆଡୁ ରାଇଚରଣ ବାବୁଙ୍କର ବିବାହର ସମ୍ବନ୍ଧ ଆସିବାକୁ ଲାଗିଲା । ଏତେ ଅଳ୍ପ ବୟସରେ ବିବାହ କରିବା ଯୁକ୍ତିସଙ୍ଗତ ନୁହେଁ, ରାଇଚରଣ ବାବୁଙ୍କର ହୃଦୟରେ ଏଇପରି ଦୃଢ଼ ସଂକଳ୍ପ ଥିଲେ ମଧ୍ୟ ଦୁଃଖିନୀ ଜନନୀଙ୍କର କଷ୍ଟମୋଚନ ଲାଗି ଅଗତ୍ୟା ତାଙ୍କୁ ବିବାହ କରିବାକୁ ପଡ଼ିଲା ।

ଜୟପାଶା ଗ୍ରାମର ଶ୍ରୀଯୁକ୍ତ ମଙ୍ଗଳ ଚନ୍ଦ୍ର ଦତ୍ତ ମହାଶୟଙ୍କର କନ୍ୟା ଶ୍ରୀମତୀ ସ୍ୱର୍ଣ୍ଣମୟୀ ଯେପରି ସାକ୍ଷାତ୍ ସ୍ୱର୍ଣ୍ଣମୟୀ ଲକ୍ଷ୍ମୀଦେବୀ । କନ୍ୟାଟିର ରୂପ ଗୁଣ ଓ ସୁଶୀଳତା ପର୍ଯ୍ୟବେକ୍ଷଣ କଲେ ବୋଧ-ହୁଏ ଯେପରି କୌଣସି ଦେବବାଳା ଶାପଭ୍ରଷ୍ଟା ହୋଇ ମର୍ତ୍ତ୍ୟରେ ଜନ୍ମ ଗ୍ରହଣ କରିଛନ୍ତି । ଏଇ ସର୍ବସୁଲକ୍ଷଣଯୁକ୍ତା ଓ ସର୍ବାଙ୍ଗସୁନ୍ଦରୀ କନ୍ୟାରତ୍ନର ସହିତ ଗୌରଚରଣ ବାବୁଙ୍କର ବିବାହ—ସମ୍ବନ୍ଧ ସ୍ଥିର ହୋଇଗଲା । ଉଭୟ ପକ୍ଷ ବିବାହ ଆୟୋଜନରେ ଲାଗି-ପଡ଼ିଲେ । ମାଆ କନକସୁନ୍ଦରୀଙ୍କର ହୃଦୟରେ ଆନନ୍ଦ କଣ୍ଢେଇଲେ ନଧରେ । ଯାହାଙ୍କୁ ଦେଖିଲେ, ତାଙ୍କୁ ପୁତ୍ର ବିବାହର ନିମନ୍ତ୍ରଣ ଦେଲେ । ମୋକ୍ଷଦା ସୁନ୍ଦରୀ ବିବାହର ଉପଯୋଗୀ ଯାବତୀୟ ଦ୍ରବ୍ୟ ସଂଗ୍ରହ କଲେ । କ୍ରମେ ବିବାହ ଦିନ ନିକଟବର୍ତ୍ତୀ ହେଲା । ପୂର୍ବଦିନ ବରଯାତ୍ରୀ ସଙ୍ଗେ ବର ମହାସମାରୋହରେ ବିବାହ କରିବାକୁ ଯାତ୍ରା କଲେ । ଦତ୍ତ ମହାଶୟ ମଧ୍ୟ ଯଥେଷ୍ଟ ସମ୍ମାନର ସହିତ ବିଶେଷ ଆଗ୍ରହ ସହକାରେ କନ୍ୟାଦାନ କର୍ମ ସମ୍ପନ୍ନ କଲେ । ଯଥା ସମୟରେ ବର ଓ ନବବଧୂ ମହିଷଖୋଲାର ଘରକୁ ପ୍ରତ୍ୟାବର୍ତ୍ତନ କଲେ । ଆନନ୍ଦମୟୀ କନକସୁନ୍ଦରୀ ପୁତ୍ର ଏବଂ ପୁତ୍ରବଧୂକୁ ଦେଖି ସୁଖ ସାଗରରେ ଭାସିବାକୁ ଲାଗିଲେ ।

ଘରେ ଯେ କୌଣସି ଉତ୍ସବ ହେଉ, ଗୌରଚରଣ ବାବୁ ନିଜ ହାତରେ ଅନ୍ୟକୁ ଖାଇବାକୁ ଦେବାକୁ ଭଲପାଆନ୍ତି । ବିବାହ ଉପଲକ୍ଷେ ତିନି ଚାରିଦିନ ପର୍ଯ୍ୟନ୍ତ ଭିନ୍ନ ଭିନ୍ନ ଦେଶରୁ ଆସିଥିବା ଆତ୍ମୀୟ କୁଟୁମ୍ବବର୍ଗଙ୍କୁ ଅତି ଯତ୍ନ ସହକାରେ ନାନାବିଧ ଉପାଦେୟ ଦ୍ରବ୍ୟ ଖୁଆଇ ପରିତୋଷ କରିଥିଲେ । ଦୁଃଖି-କାଙ୍ଗାଳୀମାନଙ୍କୁ ଅତି ଆଦର ଯତ୍ନକରି ଖୁଆଇବାକୁ ଖୁବ୍ ଭଲ ପାଉଥିଲେ ।

ଯଥା ସମୟରେ ବିବାହ ଉତ୍ସବ ଶେଷ ହେଲା । ଦେବୀ ସ୍ୱର୍ଣ୍ଣମୟୀ ଗୃହକୁ ଆସିବାପରେ କ୍ରମଶଃ ପରିବାରର ଉନ୍ନତି ହେବାକୁ ଲାଗିଲା । ନିଜ ସ୍ୱଭାବ ଗୁଣରେ ଆତ୍ମୀୟ ସ୍ୱଜନ ଓ ପ୍ରତିବେଶିମାନଙ୍କୁ ଏତେ ମୁଗ୍ଧ କରିଦେଲେ ଯେ, ସେମାନେ ସମସ୍ତେ କଥାରେ କଥାରେ ଦେବୀ ସ୍ୱର୍ଣ୍ଣମୟୀଙ୍କର ଦୃଷ୍ଟାନ୍ତ ଦେଲେ । ଏଇପରି ଅଳ୍ପକାଳ ମଧ୍ୟରେ ଦେବୀ ସ୍ୱର୍ଣ୍ଣମୟୀ ସର୍ବସାଧାରଣଙ୍କର ପ୍ରିୟପାତ୍ରୀ ହୋଇ ପଡ଼ିଲେ । ବିବାଦ ସମ୍ବାଦ କାହାକୁ କହନ୍ତି ସେ ଆଦୌ ଜାଣି ନଥିଲେ । ମୋକ୍ଷଦା ସୁନ୍ଦରୀ ଭ୍ରାତୃବଧୂକୁ ପୁତ୍ରବଧୂ ପରି ସ୍ନେହ ଓ ଯତ୍ନ କରୁଥିଲେ । ଗୌରଚରଣବାବୁଙ୍କର ଏଇଭଳି ସୁନାର ସଂସାର ଦେଖି ଦେବୀ କନକସୁନ୍ଦରୀଙ୍କର ଆଉ ଆନନ୍ଦର ସୀମା ନାହିଁ ।

## ମାତୃଦେବୀଙ୍କର ପରଲୋକ

କ୍ରମେ ଦିନ ପରେ ଦିନ—ମାସ ପରେ ମାସ ଅତୀତ ହେଲା । ଆନନ୍ଦର ଦିନ—ସୁଖର ସମୟ ଶୀଘ୍ର ଗୁଲିଯାଏ । ଦେବୀ କନକ-ସୁନ୍ଦରୀଙ୍କର ବୟସ ବେଶି ହୋଇଯିବାରୁ ଅତି ଦୁର୍ବଳ ହୋଇ ପଡ଼ିଲେ । ପ୍ରାୟ ସବୁବେଳେ କହନ୍ତି, "ମାଆ ଜଗଦମ୍ବେ ! ମୋ ମନର ସକଳ ଆଶା ପୂର୍ଣ୍ଣ ହୋଇଛି । ଏଇଥର ମୋତେ ଚରଣ-ତଳେ ସ୍ଥାନ ଦିଅ ମାଆ ।" ଦିନେ ପ୍ରାଣାଧିକ ଗୌରଚରଣକୁ ଡାକି କହିଲେ, "ବାପାରେ ! ଆଉ ଆଗପରି ଖେଳି ବୁଲିଲେ ଚଳିବ ନାହିଁ । ସଂସାର ପ୍ରତି ଟିକିଏ ଦୃଷ୍ଟି ଦେ' । ମୁଁ ବୋଧହୁଏ ଆଉ ବେଶୀ ଦିନ ବଞ୍ଚିବି ନାହିଁ । ଯେଉଁଠାରେ ଥାଆ, ଶେଷ କାଳରେ ଯେପରି ମୋ ପାଖେ ପାଖେ ରହିଥିବୁ । ଶେଷ ମୁହୂର୍ତ୍ତରେ ମୋ ମୁଖରେ ଗଙ୍ଗାଜଳ ଦେବୁ ଆଉ ହରିନାମ ଶୁଣାଇବୁ ।"

ରାଇଚରଣବାବୁ ସାମାନ୍ୟ ଚିନ୍ତିତ ହୋଇ ଜନନୀଙ୍କୁ ସାନ୍ତ୍ୱନା ଦେଲେ । ନାନାକାରଣରୁ ରାଇଚରଣଙ୍କର ଲେଖା ପଢ଼ାରେ ଅନେକ ବାଧାବିଘ୍ନ ଆସି ପହଞ୍ଚିଲା । ସେଥିର ଚିନ୍ତା ହେଲା ତାର ପ୍ରଧାନ କାରଣ । ମାଆଙ୍କର ଶରୀର କ୍ରମଶଃ ଭାଙ୍ଗି ପଡ଼ିଲା । ଭଲ ଭଲ କବିରାଜ ଆସି ଶରୀର ପରୀକ୍ଷା କଲେ । କିନ୍ତୁ କିଛି ଫଳ ହେଲାନାହିଁ । କିଛିଦିନ ପରେ ଦେବୀ କନକସୁନ୍ଦରୀ ପୁତ୍ର ଓ ପୁତ୍ରବଧୂଙ୍କର ମୁଖ ଦେଖି "ହରେ ରାମ ନାରାୟଣ ବ୍ରହ୍ମ" କହି କହି ମାନବଲୀଳା ସମ୍ବରଣ କଲେ । ମାତୃଶୋକରେ ରାଇଚରଣବାବୁ ଏବଂ ଦେବୀ ସ୍ୱର୍ଣ୍ଣମୟୀ ଉଭୟେ ଅତିଶୟ ଅଧୀର ହୋଇ ପଡ଼ିଲେ । ଶ୍ୱଶୁର ମହାଶୟ ଏବଂ ଗ୍ରାମବାସୀ ଆତ୍ମୀୟ ସ୍ୱଜନମାନଙ୍କ ସଙ୍ଗେ ପରାମର୍ଶ କରି ମହାସମାରୋହରେ ମାତୃ ଶ୍ରାଦ୍ଧ ସମ୍ପନ୍ନ କଲେ । କ୍ରମେ ଏକବର୍ଷ ପୂର୍ଣ୍ଣ ହୁଅନ୍ତେ ରାଇଚରଣ ତାଙ୍କର ପରଲୋକଗତ ମାତୃଦେବୀଙ୍କର ସପିଣ୍ଡୀକରଣ ଶ୍ରାଦ୍ଧକାର୍ଯ୍ୟ ସମ୍ପନ୍ନ କଲେ ।

## ପୁତ୍ରଲାଭ

ଶୁଭକ୍ଷଣରେ ଦେବୀ ସ୍ୱର୍ଣ୍ଣମୟୀ ଗୋଟିଏ ପୁତ୍ରସନ୍ତାନ ପ୍ରସବ-କଲେ । ପୁତ୍ରଟିର ଅପରୂପ ରୂପଦେଖି ସମସ୍ତେ ମୁଗ୍ଧ ଓ ବିମୋହିତ ହେଲେ । ଯଥା ସମୟରେ ବିଶେଷ ଆଡ଼ମ୍ବର ସହିତ ରାଇଚରଣ ବାବୁ ପୁତ୍ରର ଅନ୍ନପ୍ରାଶନ ଶୁଭକାର୍ଯ୍ୟ ସମ୍ପନ୍ନ କଲେ । ଏହି ସମୟରେ କେତେକ ଭଦ୍ରଲୋକଙ୍କର ବିଶେଷ ଆଗ୍ରହରେ ରାଇଚରଣ ବାବୁ ଦକ୍ଷିଣ ବାଡ଼ି ଗ୍ରାମ ନିବାସୀ ଶ୍ରୀଯୁକ୍ତ କୃଷ୍ଣ ଚରଣ ଦତ୍ତ ମହାଶୟଙ୍କର କନ୍ୟାଙ୍କୁ ବିବାହ କଲେ । ମାତ୍ର ଦୁଇ ବର୍ଷ ପରେ ତାଙ୍କର ଏହି ସ୍ତ୍ରୀ ପରଲୋକ ଗମନ କଲେ । କ୍ରମେ

ପୁତ୍ରଟି ପାଞ୍ଚ ବର୍ଷ ଅତିକ୍ରମ କରି ଷଷ୍ଠ ବର୍ଷରେ ପଦାର୍ପଣ କଲା । ପୁତ୍ରଟିର ବାଲ୍ୟକାଳର କ୍ରିୟାକଳାପ ଓ ବୁଦ୍ଧିବୃତ୍ତି ଦେଖି ଘାଇଚରଣ ବାବୁ କହନ୍ତି, "ଏ କଦାପି ବଂଚିବ ନାହିଁ ।" ସତକୁ ସତ ଛଅ ବର୍ଷ ନ ପୂରୁଣୁ ପୁତ୍ର ପିତା ମାତା ଓ ଆତ୍ମୀୟ ସ୍ୱଜନଙ୍କୁ କନ୍ଦାଇ ଇହଧାମ ତ୍ୟାଗକଲା । ପୁତ୍ର ଶୋକରେ ମା ସ୍ୱର୍ଣ୍ଣମୟୀ ଏବଂ ମୋକ୍ଷଦା ସୁନ୍ଦରୀଙ୍କର ଅନ୍ତରରେ ବଡ ଦୁଃଖ ଜନ୍ମିଲା । କିନ୍ତୁ ଏହା ଦୈବାଧୀନ କାର୍ଯ୍ୟ, ଜନ୍ମ, ମୃତ୍ୟୁ ତ ସମସ୍ତଙ୍କର ଅଛି । ଏହା ଭାବି ମନକୁ କିଞ୍ଚିତ୍ ଶାନ୍ତ କଲେ । ଦେଖି ସ୍ୱର୍ଣ୍ଣମୟୀ ବୁଝିଥିଲେ ଯେ, ତାଙ୍କର ଆଉ ସନ୍ତାନାଦି ହେବାର ସମ୍ଭାବନା ନାହିଁ । ଏଥିପାଇଁ ସେ ପୁନର୍ବାର ସ୍ୱାମୀଙ୍କୁ ବିବାହ ଦେବାଲାଗି ବଡ଼ ବ୍ୟସ୍ତ ହୋଇପଡ଼ିଲେ । କିନ୍ତୁ ଘାଇଚରଣ ବାବୁ ଏହି ପ୍ରସ୍ତାବରେ ସମ୍ମତ ହେଲେ ନାହିଁ ।

## ତୃତୀୟ ପରିଚ୍ଛେଦ

ଘାଇଚରଣ ବାବୁଙ୍କର ବୟସ ବର୍ତ୍ତମାନ ପ୍ରାୟ ଛବିଶ ବର୍ଷ । ମୋକ୍ଷଦାସୁନ୍ଦରୀ ବେଳେବେଳେ ଖିଦିରପୁର କଲା ଅନ୍ତର୍ଗତ ଘୋଡ଼ାଖାଲି ତାଙ୍କର ମାମୁଁ ଘରକୁ ପ୍ରାୟ ଯାତାୟତ କରୁଥିଲେ । ଏହି ଉଦ୍ଦେଶ୍ୟରେ ଘାଇଚରଣ ବାବୁଙ୍କୁ ଭଉଣୀ ସହିତ ଥରେ ଥରେ ଘୋଡ଼ାଖାଲି ଯିବାକୁ ହେଉଥିଲା । ଏହି ଗ୍ରାମ ନିବାସୀ ଶ୍ରୀଯୁକ୍ତ ବାବୁ ବଦନଚନ୍ଦ୍ର ସରକାର ମହାଶୟ ଅପୁତ୍ରିକ ; ତାଙ୍କର ତିନୋଟି ମାତ୍ର କନ୍ୟା । ସରକାର ମହାଶୟ ବଡ଼ ସରଳ ପ୍ରକୃତିର ଲୋକ ଥିଲେ । ତାଙ୍କର ଯଥେଷ୍ଟ ସମ୍ପତ୍ତି ଥିଲେ ମଧ୍ୟ ସେ ବଡ଼ ଅନାସକ୍ତ ଥିଲେ । ପତ୍ନୀ ଶିଶୁମୁଖୀ ଦେଖି ଏହାର କାରଣ ପଚାରିବାରୁ ସେ କହୁଥିଲେ, "କିଏ ଖାଇବ ? କୌଣସି ପ୍ରକାରେ

ଦିନ କଟିଗଲେ ହେଲା । ତିନୋଟି କନ୍ୟାର ବିବାହ ଦେଇଦେଲେ ମୁଁ ନିଶ୍ଚିନ୍ତ ହେବି ।" କିଛିଦିନପରେ ସରକାର ମହାଶୟ ଗଇଚରଣବାବୁଙ୍କର ସମ୍ପର୍କୀୟ ଶ୍ରୀଯୁକ୍ତ ଈଶ୍ୱରଚନ୍ଦ୍ର ଘୋଷ ମହାଶୟଙ୍କର ପୁତ୍ର ବସନ୍ତକୁମାରକୁ ତାଙ୍କର ପ୍ରଥମା କନ୍ୟା ଅର୍ପଣ କଲେ । ସରକାର ମହାଶୟଙ୍କର ନିତାନ୍ତ ଇଚ୍ଛା ଯେ, ଗଇଚରଣବାବୁଙ୍କୁ ତାଙ୍କର ଗୋଟିଏ କନ୍ୟା ଦାନକରି ତାଙ୍କ ନାମରେ ଯାବତୀୟ ସମ୍ପତ୍ତି ଲେଖିଦେବେ । ଦିନେ କଥା ପ୍ରସଙ୍ଗରେ ସରକାର ମହାଶୟ ମୋକ୍ଷଦା ସୁନ୍ଦରୀଙ୍କ ନିକଟରେ ଏହି ପ୍ରସ୍ତାବ ଆଣିବାରୁ ସେ କୌଣସି ଉତ୍ତର ନ ଦେଇ ଦେବୀ ସ୍ୱର୍ଣ୍ଣମୟୀଙ୍କୁ ସମସ୍ତ କଥା କହିଲେ । ଦେବୀ ସ୍ୱର୍ଣ୍ଣମୟୀ ଶୁଣି ଅତ୍ୟନ୍ତ ଖୁସି ହେଲେ ଏବଂ ସ୍ୱାମୀଙ୍କୁ ବିଶେଷ ଅନୁରୋଧ କରି ତାଙ୍କର ଅନୁମତି ଗ୍ରହଣ ପୂର୍ବକ ବହୁ ଆଡ଼ମ୍ବର ସହିତ ସରକାର ମହାଶୟଙ୍କର ଦ୍ୱିତୀୟା କନ୍ୟା ଶ୍ରୀମତୀ ତ୍ରୈଲୋକ୍ୟତାରିଣୀଙ୍କ ସଙ୍ଗେ ତାଙ୍କର ସ୍ୱାମୀଙ୍କର ଶୁଭପରିଣୟ କାର୍ଯ୍ୟ ଶେଷ କଲେ । ଗଇଚରଣବାବୁ ଶ୍ୱଶୁରଙ୍କର ସମସ୍ତ ସମ୍ପତ୍ତିର ଅଧିକାରୀ ହୋଇ ତାହାର ରକ୍ଷଣାବେକ୍ଷଣ କଲେ ।

## ମନ୍ତ୍ରଗ୍ରହଣ ଓ ଘୋଡ଼ାଖାଲି ବାସ

ଏହି ସମୟରେ ଗଇଚରଣ ବାବୁ ଖୁଲଣା ଜିଲ୍ଲା ଅନ୍ତର୍ଗତ ମୂଳଘର ଗ୍ରାମ ନିବାସୀ ଶ୍ରୀଯୁକ୍ତ ଯୋଗେନ୍ଦ୍ରନାଥ ଭଟ୍ଟାଚାର୍ଯ୍ୟ ମହାଶୟଙ୍କର ନିକଟରୁ ଦୀକ୍ଷାମନ୍ତ୍ର ଗ୍ରହଣ କଲେ । ମହିଷଖୋଲାରୁ ଘୋଡ଼ାଖାଲି ଯାତାୟତର ବଡ଼ ଅସୁବିଧା ଦେଖି ସେ ମହିଷଖୋଲାରେ ନ ରହି ଘୋଡ଼ାଖାଲିରେ ବାସକଲେ । ପ୍ରଜାଗଣ ଗଇଚରଣବାବୁଙ୍କର ସରଳ ବ୍ୟବହାରରେ ଏତେ

ସନ୍ତୁଷ୍ଟ ହେଲେ ଯେ ବହୁକାଳର ବେଦଖଲ ସମ୍ପତ୍ତିରେ ଦଖଲ ଦେବାକୁ ଆରମ୍ଭ କଲେ । ରାଇଚରଣ ବାବୁ ଗ୍ରାମରେ ଅନେକ ପଡ଼ିଆ ଜମିକୁ ଆବାଦ କରି ଜମିଦାରୀର ଆୟ ବୃଦ୍ଧି କଲେ । ଜମିଦାରୀ କାର୍ଯ୍ୟରେ ରାଇଚରଣ ବାବୁଙ୍କର ନୈପୁଣ୍ୟ ଦେଖି ହୁଗୁଳି ଜିଲ୍ଲା ଅନ୍ତର୍ଗତ ଶ୍ରୀରାମପୁର-ନିବାସୀ ଜମିଦାର ବାବୁ ଆଶୁତୋଷ ଗୋସ୍ୱାମୀ ମହାଶୟ ବିଶେଷ ଅନୁରୋଧ ପୂର୍ବକ ତାଙ୍କୁ ମାମୁଦପୁର ସଦର କଚେରୀର ନାଏବୀ ପଦ ପ୍ରଦାନ କଲେ । ଦେବୀ ତ୍ରୈଲୋକ୍ୟତାରିଣୀଙ୍କର ଗର୍ଭରୁ ପ୍ରଥମ କନ୍ୟା ସନ୍ତାନ ଜନ୍ମହୋଇ ପ୍ରାୟ ଦୁଇମାସ ପରେ ଇହଲୋକ ପରିତ୍ୟାଗ କଲା । ତା ପରେ ଦେବୀ ତ୍ରୈଲୋକ୍ୟତାରିଣୀଙ୍କ ଗର୍ଭରେ ରାଇଚରଣ ବାବୁଙ୍କର ଗୋଟିଏ ପୁତ୍ର ସନ୍ତାନ ଜନ୍ମେ । ତାହାର ନାମ "ଫଣି ଭୂଷଣ ।" ଫଣି ଭୂଷଣ ମଧ୍ୟ ଛଅ, ସାତମାସ ପରେ ଅକାଳ ମୃତ୍ୟୁ ବରଣ କଲା ।

ରାଇଚରଣ ବାବୁ ମାମୁଦପୁର କଚେରୀରେ ରାଜକର୍ମରେ ବ୍ୟସ୍ତ ଥିଲେ, ଏହି ସମୟରେ ସମ୍ବାଦ ପହଞ୍ଚିଲା ଯେ ତାଙ୍କର ଶ୍ୱଶୁର ମହାଶୟ ସାଂଘାତିକ ପୀଡ଼ିତ । ଘରେ ପହଞ୍ଚି ଦେଖିଲେ ଯେ ତାଙ୍କର ଜୀବନରକ୍ଷା ବଡ଼ ଦୁଷ୍କର । ତେଣୁ ତାଙ୍କୁ ସେଠାରେ କେତେକ ଦିନପାଇଁ ରହିବାକୁ ହେଲା । ସେହି ରୋଗରେ ଶ୍ୱଶୁର ମହାଶୟ ଇହଲୀଳା ସମ୍ବରଣ କଲେ ।

# ଦେଶ ହିତୈଷିତା

ପରୋପକାର—ବୃତ୍ତିଟି ଯେପରି ରାଇଚରଣ ବାବୁଙ୍କର ସହଜାତ । ପରଦୁଃଖରେ ପ୍ରାଣ କାନ୍ଦିବା ତାଙ୍କର ଚିରଦିନର

ସ୍ୱଭାବ । ଥରେ ପୌଷମାସରେ କଟେଖରୁ ଘୋଡ଼ାଖାଲି ଅସି ଗ୍ରାମରେ ବୁଲି ବୁଲି ଦେଖିଲେ ଯେ ଜଳାଭାବରେ ଲୋକମାନେ ଖୁବ୍ କଷ୍ଟ ପାଉଛନ୍ତି । ପ୍ରଜାମାନଙ୍କ ଦୁଃଖରେ ତାଙ୍କର ପ୍ରାଣ କାନ୍ଦି ଉଠିଲା, ହୃଦୟ ବିଗଳିତ ହେଲା । ସେ ଗ୍ରାମର ଜଣେ ମୁଖିଆଙ୍କୁ ଡାକି କହିଲେ, "ଗୋଟିଏ ପୁଷ୍କରିଣୀ ଅତିଶୀଘ୍ର ଖୋଳାଇବାକୁ ହେବ । ତୁମ ଉପରେ ଏ କାର୍ଯ୍ୟର ସମ୍ପୂର୍ଣ୍ଣ ଭାର ଦେଲି । ଏହି କାର୍ଯ୍ୟରେ ଯେତେ ଅର୍ଥ ବ୍ୟୟ ହେବ, ମୁଁ ଦେବି, କିନ୍ତୁ ପୁଷ୍କରିଣୀଟି ଏପରି ହେବା ଦରକାର, ଯେଉଁଥିରେ ଗ୍ରାମବାସୀଙ୍କର ଜଳକଷ୍ଟ ଦୂର ହେବ ।" ରାଇଚରଣ ବାବୁଙ୍କର କଥା ଯେପରି, କାର୍ଯ୍ୟ ମଧ୍ୟ ସେଇପରି । ବହୁ ଅର୍ଥ ବ୍ୟୟରେ ପୁଷ୍କରିଣୀଟି ଅତି ସୁନ୍ଦର ଭାବରେ ଖୋଳା ହେଲା । ଗ୍ରାମ ଲୋକମାନଙ୍କର ଜଳାଭାବ ସମ୍ପୂର୍ଣ୍ଣରୂପେ ଦୂରୀଭୂତ ହେଲା । ସର୍ବସାଧାରଣ ବିଶେଷ ଭାବରେ ଉପକୃତ ହେଲେ ।

ଗ୍ରାମସ୍ଥ ଅଧିକାଂଶ ବାଳକ ଲେଖାପଢ଼ା ଜାଣିନାହାନ୍ତି ଦେଖି ରାଇଚରଣ ବାବୁଙ୍କ ମନରେ ବଡ଼ ଦୁଃଖ ହେଲା । ସେ ବାଳକମାନଙ୍କର ଅଭିଭାବକଙ୍କ ଠାରୁ ଜାଣିବାକୁ ପାଇଲେ ଯେ ଗ୍ରାମରେ ବିଦ୍ୟାଳୟ ଅଭାବରୁ ବାଳକମାନେ ଶିକ୍ଷାଲାଭରୁ ବଞ୍ଚିତ ହୋଇଛନ୍ତି । ଏହାଶୁଣି ନିଜର ବହିବାଟିରେ ଗୋଟିଏ ବଡ଼ ଦାଣ୍ଡିଘରେ ଅବୈତନିକ ପାଠଶାଳା ସ୍ଥାପନକରି ନିଜେ ଶିକ୍ଷକମାନଙ୍କୁ ବେତନ ଦେବାକୁ ଲାଗିଲେ । ଏହିପରି ସେ ବାଳକମାନଙ୍କ ପାଇଁ ଶିକ୍ଷା ମନ୍ଦିର ସ୍ଥାପନ କରି ପ୍ରଜାମାନଙ୍କର ଆଶୀର୍ବାଦ ଭାଜନ ହେଲେ । କେବଳ ଯେ ସେ ନିଜ ଗ୍ରାମରେ ଏଇପରି କାର୍ଯ୍ୟ କଲେ, ତା' ନୁହେଁ । ଯେଉଁ ସ୍ଥାନରେ ଗୃହକର୍ମ କରୁଥିଲେ, ସେ ସ୍ଥାନରେ ମଧ୍ୟ ଏଇପରି ଜଳାଶୟ ପ୍ରତିଷ୍ଠା, ବିଦ୍ୟାଳୟ ସ୍ଥାପନ

ପ୍ରଭୃତି ସତ୍ କାର୍ଯ୍ୟଦ୍ୱାରା ଦେଶର ହିତସାଧନ କରିଥିଲେ ।
ନିକଟବର୍ତ୍ତୀ କୌଣସି ଗ୍ରାମରେ ସତ୍ ଅନୁଷ୍ଠାନର ଉଦ୍‌ଯୋଗ
ହେଲେ, ଗ୍ରାମସ୍ଥ ଲୋକେ ରାଇଚରଣବାବୁଙ୍କର ପରାମର୍ଶ ନେଇ
ତାଙ୍କର ମତାନୁରୂପ କାର୍ଯ୍ୟ ନିର୍ବାହ କରୁଥିଲେ ।

# ପଦୋନ୍ନତି ଓ ଔଦାସ୍ୟ ସଞ୍ଚାର

ଜମିଦାର ବାବୁ ଆଶୁତୋଷ ଗୋସ୍ୱାମୀ ମହାଶୟ
ରାଇଚରଣ ବାବୁଙ୍କୁ ବିଶେଷ ଭଲ ପାଉଥିଲେ । ପ୍ରତି କାର୍ଯ୍ୟରେ
ମାମୁଦପୁର କଚେରୀର ନାଏବ ରାଇଚରଣ ବାବୁଙ୍କୁ ଡାକି
ପରାମର୍ଶ ନେଉଥିଲେ । ଜମିଦାର ମହାଶୟ ତାଙ୍କର ପରିମାର୍ଜିତ
ବୁଦ୍ଧି କୌଶଳ, ନିରପେକ୍ଷତା ଓ କାର୍ଯ୍ୟ ଦକ୍ଷତା ଦେଖି ତାଙ୍କୁ
ସାତର ପ୍ରଗଣାର ସୁପରିନ୍‌ଟେଣ୍ଡେଣ୍ଟ ପଦକୁ ଉନ୍ନୀତ କଲେ,
କିନ୍ତୁ ରାଇଚରଣ ବାବୁଙ୍କର ମନ ସର୍ବଦା ଉଦାସ; ସଂସାର ତାଙ୍କୁ
ଆଦୌ ଭଲ ଲାଗିଲା ନାହିଁ । ଆଉ ବାବୁ ହୋଇ ଲୋକଙ୍କ
ଉପରେ ଶାସନ ଦଣ୍ଡ ଧାରଣ କରିବାକୁ ଇଚ୍ଛା ହେଲା ନାହିଁ ।
ଜମିଦାରୀ କାର୍ଯ୍ୟ ଷଡ଼ଯନ୍ତ୍ରତାରେ ପରିପୂର୍ଣ୍ଣ । ହଠାତ୍ ସେକାର୍ଯ୍ୟ
ପରିତ୍ୟାଗ କରିବା ଏତେ ସହଜ ନୁହେଁ । ସଂସାର-ବନ୍ଧନ
ଛିନ୍ନ କରିବା ରାଇଚରଣବାବୁଙ୍କ ପକ୍ଷରେ ଏତେ କଠିନ୍ ନୁହେଁ;
କିନ୍ତୁ ଜମିଦାର ଆଶୁବାବୁଙ୍କର କରଛଡ଼ା ହେବା ଖୁବ୍ କଷ୍ଟ ।
ମନେ ମନେ ସେ ଏକ ଉପାୟ ସ୍ଥିର କରି ନିଜ ଘରେ ଆସି
ବସିଲେ ।

ଏହି ସମୟରେ ତାଙ୍କ ଦୀକ୍ଷା ଗୁରୁ ଶ୍ରୀଯୁକ୍ତ ଯୋଗେନ୍ଦ୍ର
ନାଥ ଭଟ୍ଟାଚାର୍ଯ୍ୟ ମହାଶୟ ଘୋଡ଼ାଖାଲିରେ ପହଞ୍ଚିଲେ । ତାଙ୍କୁ

ଦର୍ଶନ କରିବା ମାତ୍ରେ ଅତି ଆନନ୍ଦରେ ଘାଇଚରଣବାବୁ ତାଙ୍କର ଯଥୋଚିତ ଆଦର ଅଭ୍ୟର୍ଥନାକଲେ । ଦିନେ ଗୁରୁ ଶିଷ୍ୟ ନିର୍ଜନରେ ବସି କଥୋପକଥନ ହେଲେ । ଶିଷ୍ୟ କହିଲେ "ଗୁରୁଦେବ, ମୋର କରକୋଷ୍ଠୀ ଆପଣଙ୍କୁ ଦେଖିବାକୁ ହେବ ।" ଭଟ୍ଟାଚାର୍ଯ୍ୟ ମହାଶୟ ଜ୍ୟୋତିଷ ଶାସ୍ତ୍ରରେ ବିଶେଷ ପାରଦର୍ଶୀ ଥିଲେ । ତେଣୁ ସେ ଅତି ଆନନ୍ଦରେ ଶିଷ୍ୟର କରକୋଷ୍ଠୀ ଗଣନା କରି ପ୍ରଶ୍ନ କଲେ, "ତୁମର କୋଷ୍ଠୀ ଅଛି ତ ? ଶିଷ୍ୟ ଉତ୍ତର ଦେଲେ, "ହଁ, ଅଛି ।" ଗୁରୁଦେବ କହିଲେ, "ତେବେ ସେ କୋଷ୍ଠୀଟିକୁ ଆଣି ମୋତେ ଦେଖାଅ ।" ଶିଷ୍ୟ ଭଉଣୀ ମୋକ୍ଷଦା ସୁନ୍ଦରୀଙ୍କ ନିକଟରୁ କୋଷ୍ଠୀ ଖଣ୍ଡି ଅଣାଇ ଗୁରୁଦେବଙ୍କୁ ଦେଲେ । ଗୁରୁଦେବ କର ଏବଂ କୋଷ୍ଠୀ ଉଭୟଙ୍କୁ ମିଳାଇ କହିଲେ, "ବାବା ଘାଇଚରଣ, ତୁମର ତ ଏ ସଂସାର ଭୋଗ ଆଉ ବେଶୀଦିନ ନୁହେଁ । ଅତି ଅଳ୍ପ ଦିନ ମଧ୍ୟରେ ତୁମେ ଗୃହତ୍ୟାଗ କରିବ । ଶେଷ ଜୀବନରେ ତୁମର ଅବସ୍ଥା ଅତି ଉନ୍ନତ ହେବ । ଅଧିକ ଆଉ କ'ଣ କହିବି ? ଦିନେ ତୁମର ଏପରି ଅବସ୍ଥା ଆସିବ ଯେ ବହୁ ଲୋକ ତୁମର ପୂଜା କରିବେ ।"

ଘାଇଚରଣ—ଗୁରୁଦେବ ! ଉନ୍ନତ ଅବସ୍ଥା କହିଲେ କ'ଣ ବୁଝୁଛନ୍ତି ? ଲୋକେ ପୂଜା କଲେ ମୋର କ'ଣ ହେବ ? ଆପଣ ଆଶୀର୍ବାଦ କରନ୍ତୁ, ମୁଁ ଯେପରି ସମସ୍ତଙ୍କ ନିକଟରେ ମାନ ବଜାଇ ରଖିପାରିବି ।

ଗୁରୁଦେବ—ତୁମର ଶେଷ ଜୀବନରେ ଉନ୍ନତିର କଥା ମୁଁ ଭାଷାରେ ବ୍ୟକ୍ତ କରି ପାରୁନାହିଁ । ତୁମର କରକୋଷ୍ଠୀ ଏବଂ ଜାତ କୋଷ୍ଠୀର ଫଳ ଦେଖି ମୁଁ ନିଜକୁ ଧନ୍ୟ ମନେ କରୁଛି । ଆଉ ତୁମକୁ ଅଧିକ କ'ଣ କହିବି ?

ରାଇଚରଣ ବାବୁ ନିର୍ଜନରେ ବସି ଉକ୍ତ ଆଚାର୍ଯ୍ୟ ମହାଶୟଙ୍କଠାରୁ ପୁରଶ୍ଚରଣ ବିଧି ଶିଖିନେଲେ ।

## ଚାକିରୀରେ ଅନିଚ୍ଛା

ଜମିଦାର ଆଶୁବାବୁଙ୍କର ଜମିଦାରୀରେ ପ୍ରଜାବିଦ୍ରୋହ ଆରମ୍ଭ ହୋଇଯିବାରୁ ଓ ଅନ୍ୟ କୌଣସି କର୍ମଚାରୀ ଶାସନ କରି ନପାରିବାରୁ ଆଶୁବାବୁ ରାଇଚରଣ ବାବୁଙ୍କୁ ଏ ବିଷୟରେ ସାହାଯ୍ୟ କରିବାକୁ ଅନୁରୋଧ କଲେ । ରାଇଚରଣ ବାବୁ ଆଶୁବାବୁଙ୍କୁ କହିଲେ, "ମୋତେ ଏ ଚାକିରୀରୁ ନିଷ୍କୃତି ଦିଅନ୍ତୁ, ମୁଁ ଆଉ ଏ ସଂସାର ହଣାକଟା ଭିତରକୁ ଯିବାକୁ ଇଚ୍ଛା କରୁନାହିଁ ।" ଏହା କହି ପୁଣି ଘୋଡ଼ାଖାଲି ଚାଲିଗଲେ । ଆଶୁବାବୁ ପୁଣି ଆଗ୍ରହ ସହକାରେ ଖଣ୍ଡେ ପତ୍ର ଲେଖି ପଠାଇଲେ । ପତ୍ରଟିର ସାରାଂଶ ଏଇ ଯେ—

ଆପଣଙ୍କୁ ମୋର ଆଉ କିଛି କହିବାର ନାହିଁ । ଆପଣ ଥରେ ଆସି ମୋ ସହିତ ଦେଖା କରିବେ, ଯେପରି ଅନ୍ୟଥା ନହୁଏ, ଏଇ ମୋର ବିଶେଷ ଅନୁରୋଧ ।

ଏପରି ସମ୍ବାଦ ପାଇ ରାଇଚରଣବାବୁଙ୍କର ଭ୍ରୂକ୍ଷେପ ନାହିଁ । ଆଶୁବାବୁ ପୁନର୍ବାର ଜଣେ ଲୋକ ଦ୍ୱାରା ଏଇପରି ଆଉ ଖଣ୍ଡେ ପତ୍ର ଲେଖି ପଠାଇଲେ । ତାର ଉତ୍ତରରେ ରାଇଚରଣବାବୁ ଲେଖିଲେ—

ମୋତେ ଆଉ ସେ କାର୍ଯ୍ୟ କରିବାକୁ ଭଲ ଲାଗୁ ନାହିଁ ; ଅତଏବ ଆପଣ ଅନୁଗ୍ରହ କରି ମୋତେ ଚାକିରୀରୁ ନିଷ୍କୃତି

ଦିଅନ୍ତୁ । ସମସ୍ତ ସୁଯୋଗ ପାଇଲେ ଆପଣଙ୍କର ଚରଣ ଦର୍ଶନ କରିବାର ଇଚ୍ଛା ରହିଲା । ବର୍ତ୍ତମାନ ମୋତେ କ୍ଷମା କରିବେ ।"

କିନ୍ତୁ ଆଶୁବାବୁ ତାଙ୍କର ଏ ବିପଦ ସମୟରେ ରାଇଚରଣବାବୁଙ୍କୁ ଛାଡ଼ିବାକୁ ଚାହିଁଲେ ନାହିଁ । କାରଣ ରାଇଚରଣବାବୁଙ୍କ ଭିନ୍ନ ତାହାଙ୍କୁ ଏ ବିପଦରୁ ରକ୍ଷା କରିବାକୁ ଆଉ କେହି ନଥିଲେ । ଏହା ଭାବି ସେ ପୁନର୍ବାର ଦୁଇଜଣ ଲୋକଙ୍କୁ ଗୋଟିଏ ଘୋଡ଼ା ଦେଇ ରାଇଚରଣବାବୁଙ୍କୁ ଆଣିବାକୁ ପଠାଇଲେ । ଗ୍ରାମର ଅନେକ ଭଦ୍ରଲୋକ ରାଇଚରଣବାବୁଙ୍କୁ କହିଲେ, "ସେ (ଆଶୁବାବୁ) ଜଣେ ଧନୀ ଓ ସମ୍ଭ୍ରାନ୍ତ ଲୋକ, ପୁଣି ବ୍ରାହ୍ମଣ, ତାଙ୍କର ଏତେ ଆଗ୍ରହ, ପୁନ୍ନ ଅଗ୍ରାହ୍ୟ କରିବା ଯୁକ୍ତ ସଙ୍ଗତ ହେବ ନାହିଁ । ଆପଣ ଥରେ ତାଙ୍କ ନିକଟକୁ ଯିବା ଉଚିତ ହେବ । "ରାଇଚରଣବାବୁ ଅନିଚ୍ଛାସତ୍ତ୍ୱେ, ଘୋଡାରେ ଚଢ଼ି ଘୋଡ଼ାଖାଲିରୁ ଜମିଦାର ଆଶୁବାବୁଙ୍କ ସଙ୍ଗେ ଦେଖା କରିବାକୁ ଗଲେ । ଆଶୁ-ବାବୁ ଦେଖିବାମାତ୍ରେ ବିଶେଷ ଅନୁରୋଧ ସହିତ କହିଲେ, ଆପଣଙ୍କ ଭିନ୍ନ ମୋର ଏହି କାର୍ଯ୍ୟ କଦାପି ସମ୍ପନ୍ନ ହେବ ନାହିଁ । ଆପଣ ଯେତେ ଲୋକ ବା ଅର୍ଥ ଚାହାନ୍ତି, ମୁଁ ଦେବାକୁ ପ୍ରସ୍ତୁତ ଅଛି । ଏହି ପ୍ରଜା ବିଦ୍ରୋହ ଦମନ କରି ମୋତେ ମୋର ସମ୍ପତ୍ତି ଦଖଲ କରାଇ ଦିଅନ୍ତୁ ।" ପ୍ରଜାମାନଙ୍କ ପ୍ରତି ଅତ୍ୟାଚାର କରିବା ଯୁକ୍ତ ସଙ୍ଗତ ହେବ ନାହିଁ କହିବା ସତ୍ତ୍ୱ ଆଶୁବାବୁଙ୍କ ମନରେ ପରିବର୍ତ୍ତନ ଆସିଲା ନାହିଁ । ରାଇଚରଣବାବୁ ବିଦ୍ରୋହୀ ପ୍ରଜା-ମାନଙ୍କର ଧାନ କାଟି ଆଣିବାକୁ ଲୋକ ପଠାଇଲେ । ସେହି ସମୟରେ ବିଦ୍ରୋହୀ ଦଳ ମେଳ ବାନ୍ଧି କ୍ଷେତ ଉପରେ ଉପସ୍ଥିତ ହୋଇ ଦଙ୍ଗା ହେଙ୍ଗାମା କରିବାର ଉଦ୍ୟୋଗ କଲେ । ଏ ସମ୍ବାଦ ପାଇ ପ୍ରଥମେ ବିବାଦ ସ୍ଥାନକୁ ରାଇଚରଣବାବୁ ଯିବାକୁ

ସମ୍ଭବ ହେଲେ ନାହିଁ । ପରେ ବିଗୁରି କରି ଦେଖିଲେ ଯେ ପ୍ରଥମତଃ ପ୍ରଜାମାନଙ୍କର କ୍ଷତି କରି ତାଙ୍କର ଧାନ କଟା ହେଉଛି, ପୁଣି ଯଦି ସେ କଟା ଧାନକୁ ଲୁଟ୍ କରି ଅଣାଯାଏ, ତେବେ ଜମିଦାରଙ୍କର ଅନଷ୍ଟ ଏବଂ ଅପମାନ ମଧ୍ୟ ହେବ । ଏଇପରି ଅନେକ ଭାବି ଚିନ୍ତି ସେ ଗୋଟିଏ ବନ୍ଧୁକ ନେଇ କ୍ଷେତ୍ର ଉପରେ ଫାଙ୍କା ଆବାଜ୍ ଦେଲେ । ବନ୍ଧୁକ ଶବ୍ଦ ଶୁଣି ବିପକ୍ଷ ଦଳ ଉଭୟରେ ପଳାୟନ କଲେ । ତାପରେ ସେ କଟା ଧାନକୁ କଚେରିରେ ଦେଖି ରାଇଚରଣବାବୁ କାନ୍ଦି କାନ୍ଦି କହିଲେ, "କ'ଣ କଲି ! ଧାନ ପାଚି ନଥିଲା, କାଟି ଆଣିଲି, କେତେ ଗରିବ ପ୍ରଜାମାନଙ୍କର କଷ୍ଟର ଧନ ଏବଂ ସୁଖର ଅନ୍ନ ଧ୍ୱଂସ କଲି ! ଦଙ୍ଗା ହେଙ୍ଗାମା ହେଇଥିଲେ କେତେ ଲୋକଙ୍କର ଜୀବନ ନଷ୍ଟ ହୋଇଥାଆନ୍ତା । ନା—ଆଉ ନୁହେଁ, ଏପରି ଘୃଣିତ କାର୍ଯ୍ୟ ଆଉ ମୁଁ କେବେହେଁ ହେଲେ କରିବି ନାହିଁ ।"

## ଗୃହତ୍ୟାଗ

ସମୟ ଦ୍ୱିପ୍ରହର; ଆହାରର ସମୟ; ରାଇଚରଣବାବୁ ଆହାର କଲେ ନାହିଁ । ତାଙ୍କର ଅନ୍ତରରେ ଅନୁତାପ ଅଗ୍ନି ଧୁ ଧୁ କରି ଜଳି ଉଠିଛି । ଅନୁରାଗର ପ୍ରବଳ ଝଞ୍ଜା ତାଙ୍କର କୋମଳ ହୃଦୟକୁ ଦୋହଲାଇ ଦେଉଛି. ସଂସାର ରୂପ ଶୁଷ୍କତୃଣ ଆଉ କେତେ ସମୟ ରହିପାରେ ? ମୁହୂର୍ତ୍ତକ ମଧ୍ୟରେ ସବୁ ପୋଡ଼ି ପାଉଁଶ ହୋଇଗଲା । ସେତେବେଳେ ଆଉ ଦେଶ ବିଦେଶ, ସମୟ ଅସମୟ, ସ୍ଥାନାସ୍ଥାନ କିଛି ବିଗୁର ରହିଲା ନାହିଁ । ଯେଉଁ ଆଡ଼କୁ ଗୁହିଁଲେ, ସବୁ ଯେପରି ଶୂନ୍ୟମୟ, ସଂସାର ଯେପରି ଗୋଟିଏ ବିଷମ ବିଷାଦର ଛାୟା ମାତ୍ର ବୋଧ ହେଲା । ଗନ୍ତବ୍ୟ ସ୍ଥାନର

କୌଣସି ସ୍ଥିରତା ନାହିଁ । କୌଣସି ଦ୍ରବ୍ୟ ପ୍ରତି ଲକ୍ଷ୍ୟ ନାହିଁ । ପଥ ପ୍ରଦର୍ଶକ ଏକମାତ୍ର ପ୍ରବଳ ଧର୍ମାନୁରାଗ ତାଙ୍କର ଉଦ୍‌ଭ୍ରାନ୍ତ ମନକୁ ଚଞ୍ଚଳ କରିଦେଲା । ରାସ୍ତା ଉପରକୁ ବାହାରି ପଡ଼ିଲେ; କିନ୍ତୁ ଦିଗବିଦିଗ ଜ୍ଞାନ ଶୂନ୍ୟ । ଅନାହାରରେ ସେ ଦିନଟି ଏଇପରି ଭାବେ କଟିଗଲା । ପରଦିନ ସାମାନ୍ୟ ଦୁଗ୍ଧ ମାତ୍ର ପାନ କଲେ । ପଥ ବିପଥ ଦିଗବିଦିଗ ଜ୍ଞାନ ଶୂନ୍ୟ ହୋଇ ଅବଶ୍ରାନ୍ତ ଭାବରେ ସେ ଦିନଟି ଚାଲି ଚାଲି ସନ୍ଧ୍ୟା ସମୟରେ ନୂଆପଡ଼ା ଘାଟ ନିକଟରେ ପହଞ୍ଚିଲେ । ଘାଟରେ ଡଙ୍ଗା ମାଝି ହାରିକ ବାବୁଙ୍କୁ ଚିହ୍ନି କହିଲା, "ବାବୁ, ଆପଣଙ୍କ ମୁହଁ ଦେଖି ମୋର ମନେ ହେଉଛି, ଯେପରି ଆପଣ କାହାରିକୁ କିଛି ନ କହି କେଉଁ ଆଡ଼େ ଚାଲି ଯାଉଛନ୍ତି । ଆପଣ ଏଠାରେ ବିଶ୍ରାମ କରନ୍ତୁ । ମୁଁ ଆପଣଙ୍କୁ ନଦୀ ପାର କରାଇ ପାରିବି ନାହିଁ । ଲୋକେ ଶେଷରେ ମୋତେ ଦୋଷୀ କରିବେ । ତା'ପରେ, ଆପଣ ଆମ ଦେଶ ଛାଡ଼ି ଚାଲିଗଲେ ଆମର ଭାଗ୍ୟ ପୂର୍ବ ପରି ଦୁଃଖ ପୂର୍ଣ୍ଣ ହେବ—ନା-ବାବୁ ! ଆପଣ ଯାଆନ୍ତୁ ନାହିଁ, ଇତ୍ୟାଦି ନାନା ପ୍ରକାର କଥା କହି ହାରିକ ମାଝି କାନ୍ଦି ପକାଇଲା । ରାଇଚରଣବାବୁ ଅନେକ ମଧୁର ବାକ୍ୟରେ ମାଝିକୁ ସାନ୍ତ୍ୱନା ଦେଇ ନିଜ ଦେହକୁ ଆବୃତ କରିଥିବା ମୂଲ୍ୟବାନ୍ ଶାଲ ଖଣ୍ଡିକ ତାର ହାତରେ ଦେଇ କହିଲେ, "ମୁଁ ଶୀଘ୍ର ଫେରି ଆସିବି । ତୁ ଶୀଘ୍ର ମୋତେ ପାରି କରିଦେ' ।" ହାରିକ ଆଉ କଥା କହି ପାରିଲା ନାହିଁ । ମନ୍ତ୍ର ମୁଗ୍ଧବତ୍ ବାବୁଙ୍କର ଆଦେଶ ପାଳନ କଲା ।

ନଦୀ ପାର ହେଲାପରେ କେଉଁଆଡ଼େ ଯିବେ, ଭାବିବାକୁ ଲାଗିଲେ । ମନେ ମନେ ସ୍ଥିର କଲେ ଯେ ଭବାନୀପୁର ମା କାଳୀଙ୍କର ଦର୍ଶନ ପ୍ରଥମ କର୍ତ୍ତବ୍ୟ । ମା ଯାହା ଆଦେଶ କରିବେ,

ତାହାହିଁ କରିବେ । ମନେମନେ ଏଇ ସିଦ୍ଧାନ୍ତ ସ୍ଥିର କରି ଗୃହକୁ ଚାଲିଲେ। ବଗୁଡ଼ା ଜିଲ୍ଲା ଅନ୍ତର୍ଗତ ଭବାନୀପୁର କାଳୀ ବାଡ଼ିରେ ପହଞ୍ଚିଲେ । ମାଆଙ୍କର ଦର୍ଶନ ଲାଭ କରି ଖୁବ୍ ଆନନ୍ଦ ଲାଭ କଲେ । କାଳୀ ମାତାଙ୍କର ସେବକ ମାନଙ୍କଠାରୁ ଏଇ ପବିତ୍ର ସ୍ଥାନର ଅମୂଲ୍ୟ ବୃତ୍ତାନ୍ତ ଶୁଣି ଏହି ସ୍ଥାନରେ କିଛିଦିନ କଟାଇବା ଲାଗି ସ୍ଥିର କଲେ ।

## ସୂର୍ଯ୍ୟ ଗ୍ରହଣ ଉପଲକ୍ଷେ ପୁରଶ୍ଚରଣ

ଦିନ ପରେ ଦିନ ଗଡ଼ିଗଲା, ରାଇଚରଣବାବୁଙ୍କର ବ୍ୟବହାର ଓ ଧର୍ମାନୁରାଗ ଦେଖି ସମସ୍ତେ ବିମୁଗ୍ଧ ହେଲେ । ତାଙ୍କର ଆକୃତି, ପ୍ରକୃତି, ବୁଦ୍ଧି ବୃତ୍ତି ଏବଂ କଥା ବାର୍ତ୍ତାରେ କାଳୀବାଡ଼ିର କର୍ମଚାରୀଗଣ ବୁଝିଲେ ଯେ, ସେ ବଡ଼ଘରର ଲୋକ । ମନେ ମନେ ଏଇ ଧାରଣା କରି ତାଙ୍କର ବିଶେଷ ଯତ୍ନ ନେଲେ । କ୍ରମେ ସୂର୍ଯ୍ୟ ଗ୍ରହଣ ସମୟ ନିକଟବର୍ତ୍ତୀ ହେଲା । ରାଇଚରଣ ବାବୁ ସମସ୍ତଙ୍କୁ କହିଲେ, ମୋର ଏକାନ୍ତ ଅଭିଳାଷ ଯେ, ମୁଁ ମାଆଙ୍କ ନିକଟରେ ମନ୍ତ୍ର ପୁରଶ୍ଚରଣ କରିବି ।” ଏହା ଶୁଣି ସମସ୍ତେ କହିଲେ, “ଏଥିରେ ଆମର କୌଣସି ଆପତ୍ତି ନାହିଁ । ତେବେ ପଞ୍ଚମୁଣ୍ଡୀ-ସିଦ୍ଧ ଆସନରେ ବସିବାକୁ ହେଲେ ଅନେକ ବିପଦର ଆଶଙ୍କା ଅଛି; କାରଣ ଅନେକ ସାଧୁ ସନ୍ନ୍ୟାସୀ ଏଇ ସ୍ଥାନକୁ ଆସି ଏହି ଆସନରେ ବସି ଅକୃତ କାର୍ଯ୍ୟ ହୋଇଛନ୍ତି ।” ଏହା ଶୁଣି ରାଇଚରଣବାବୁ କହିଲେ, “ମୋର ଏ ସିଦ୍ଧାସନରେ ବସିବାକୁ ଇଚ୍ଛା ନାହିଁ । ମାଆଙ୍କ ନିକଟରେ ଯେ କୌଣସି ସ୍ଥାନରେ

ବସିଲେ ହେବ ।" ତା'ପରେ ସେମାନେ କହିଲେ, "ଆପଣ ଯେଉଁ ସ୍ଥାନରେ ଇଚ୍ଛା ବସନ୍ତୁ, ଆମେ ସମସ୍ତ ବ୍ୟବସ୍ଥା କରିଦେବୁ ।"

ସୂର୍ଯ୍ୟ ଗ୍ରହଣ ଦିନ ରାଇଚରଣବାବୁ ସ୍ନାନ କରି ଆର୍ଦ୍ର ବସ୍ତ୍ର ପରିଧାନ କରି ଗୋଟିଏ ନିର୍ଜନ ସ୍ଥାନରେ ବସି ମନ୍ତ୍ର ପୁରଶ୍ଚରଣ କରିବାକୁ ଆରମ୍ଭ କଲେ । ପୂର୍ଣ୍ଣଗ୍ରାସ ସୂର୍ଯ୍ୟ-ଗ୍ରହଣର ଶୁଭ ସମୟରେ ସ୍ୱଗୁରୁ ରୂପେ ପୁରଶ୍ଚରଣ କାର୍ଯ୍ୟ ଆରମ୍ଭ ହେଲା । ଏଇ ସମୟରେ ହଠାତ୍ ସେ ମୂର୍ଚ୍ଛା ହୋଇପଡ଼ିଲେ । ସମସ୍ତେ ଦେଖିଲେ, ତାଙ୍କ ଅଙ୍ଗ ସକଳ କେତେବେଳେ ପୁଲକିତ ହେଉଛି, କେତେବେଳେ ବା ପ୍ରକମ୍ପିତ ହେଉଛି । ସୂର୍ଯ୍ୟଦେବ ଯେତେବେଳେ ଗ୍ରହ ମୁକ୍ତ ହୋଇ ପ୍ରଖର କିରଣ ଜାଲ ବିସ୍ତାର କଲେ, ସେତେବେଳେ ସେ ତେଜ ସମସ୍ତଙ୍କର ଅସହ୍ୟ ବୋଧ ହେବାକୁ ଲାଗିଲା । ଏହା ଦେଖି ସମସ୍ତେ ଅବାକ୍ । କେହି କହିଲେ, "ଏହାର ଶରୀରର ରକ୍ତ ଜଳ ହୋଇ ବାହାରୁଛି, ବୋଧହୁଏ ଆଉ ବେଶୀ ସମୟ ବଞ୍ଚିବେ ନାହିଁ ।" କେହି କେହି କହିଲେ, "ସେ ଅତି ସ୍ଥୂଳକାୟ, ଶରୀରରେ ମାଂସ ନାହିଁ, କେବଳ ଜଳ, ସେଇ ଜଳ ବାହାରକୁ ବାହାରୁଛି । କେତେସମୟ ପରେ ଜନୈକ ବ୍ରାହ୍ମଣ ଗୋଟିଏ ପାତ୍ରରେ କିଛି ଦୁଗ୍ଧ ନେଇ ବୁନ୍ଦା ବୁନ୍ଦା କରି ତାଙ୍କ ମୁଖରେ ଦେଲେ । ପ୍ରାୟ କୋଡ଼ିଏ ମିନିଟ୍ ପରେ ରାଇଚରଣବାବୁ ଚୈତନ୍ୟ ଲାଭ କଲେ । କିନ୍ତୁ ତାଙ୍କର ଉଠିବାର ଶକ୍ତି ନଥିଲା । ସେ ନିକଟସ୍ଥ ଏକ ବ୍ରାହ୍ମଣ ଘରେ କିଛି ଦିନ ବିଶ୍ରାମ ନେଲାପରେ ସୁସ୍ଥ ହେଲେ । ତା'ପରେ ବ୍ରାହ୍ମଣ ପଚାରିଲେ, "ମା କିଛି ଆଦେଶ କଲେ, ବାବା !" ରାଇଚରଣ-ବାବୁ କହିଲେ," "ଆପଣ ମୋର ପିତୃ ତୁଲ୍ୟ, ଆପଣଙ୍କୁ କହିବାକୁ

ମୋର କୌଣସି ଆପତ୍ତି ନାହିଁ, ତେବେ ଶୁଣନ୍ତୁ—ଜପ ସଂଖ୍ୟା ପୂର୍ଣ୍ଣ ହେବାର କିଛି କ୍ଷଣ ପୂର୍ବେ ଦୟାମୟୀ ମା ଆସି ମୋର ମସ୍ତକରେ ଆଶୀର୍ବାଦ କରି କହିଲେ, "ଯା, ତୋର ସବୁ ଆଶା ପୂର୍ଣ୍ଣ ହୋଇଛି, ମନୋମତ ଗୁରୁ ସରଯୂ କୂଳରେ ପାଇବୁ । ତାଙ୍କ ନିକଟରୁ ତୋର ଅଭିଷ୍ଟ ବସ୍ତୁ ଲାଭ ହେବ ।" ମୁଁ କାନ୍ଦି କାନ୍ଦି କହିଲି, "ମା, ମୁଁ କପରି ତାହାଙ୍କୁ ଚିହ୍ନିବି ? ସେତେବେଳେ ମା କହିଲେ,"ସେ ତୋ ଲାଗି ସେଠାରେ ଅପେକ୍ଷା କରିଛନ୍ତି । ତାଙ୍କର ଆଜାନୁଲମ୍ବିତ ବାହୁଦ୍ୱୟ, ଆକର୍ଣ୍ଣ ବିସ୍ତୃତ ଚକ୍ଷୁ; ଗୌରବର୍ଣ୍ଣ ପରମ ସୁନ୍ଦର ପୁରୁଷ ଚଉଦ ହସ୍ତ ପରିମିତ ଦେହ; ନାମ ଯୋଗେନ୍ଦ୍ର, ନାଥ ଗୋସ୍ୱାମୀ । ସେ ଅତି ବିରକ୍ତ ସନ୍ନ୍ୟାସୀ । ଗୋଟିଏ ମାତ୍ର ଶିଷ୍ୟ କରି ପ୍ରତିଜ୍ଞା କରିଛି, ଯେ ସେ ଆଉ ଶିଷ୍ୟ କରିବେ ନାହିଁ । କିନ୍ତୁ ମୁଁ ତୋ ଲାଗି ତାଙ୍କୁ ଆଦେଶ କରିଛି । ତାଙ୍କୁ ସାମାନ୍ୟ ମନୁଷ୍ୟ ବୋଲି ଭାବବୁ ନାହିଁ । ସେ ସାକ୍ଷାତ ନିତ୍ୟାନନ୍ଦ ଅବତାର" ଏହା କହି ମା ଅନ୍ତର୍ହିତା ହେଲେ ।

ରାଇଚରଣବାବୁ ବୃଦ୍ଧ ବ୍ରାହ୍ମଣଙ୍କଠାରୁ ଆଶୀର୍ବାଦ ଲାଭ କରି ବିଦାୟ ନେଲେ ।

## ଅଯୋଧ୍ୟା ଗମନ ଓ
## ସିଦ୍ଧ ଗୁରୁଲାଭ

ଅତି ଆନନ୍ଦରେ ରାଇଚରଣବାବୁ ଦିନ ରାତି ପଥ ଚାଲି ଚାଲି ଅଯୋଧ୍ୟାରେ ପହଞ୍ଚି ସରଯୂ କୂଳରେ ଉପସ୍ଥିତ ହୋଇ ଦେଖନ୍ତି ଯେ ମା ଜଗଦମ୍ବା ବର୍ଣ୍ଣିତ ସେଇ ମହାପୁରୁଷ ସରଯୂସ୍ନାନ

ଯାଇ କାଠର ଗୋଟିଏ କମଣ୍ଡଳୁ ହାତରେ ଧରି ବନ ମଧ୍ୟକୁ ପ୍ରବେଶ କରୁଛନ୍ତି । ରାଇଚରଣବାବୁଙ୍କୁ ଦେଖିବା ମାତ୍ରେ ସେ ମହାସ୍ୟ ବଦନରେ କହିଲେ, "ବା, ମୁଁ ତୁମ ପାଇଁ ଅପେକ୍ଷା କରିଥିଲି, ଆସ ।" ଏଇ କଥା ଶୁଣିଲା ମାତ୍ରେ ରାଇଚରଣବାବୁ ଦ୍ରୁତ ବେଗରେ ଯାଇ ମହାପୁରୁଷଙ୍କ ପଦ ତଳେ ନିପତିତ ହେଲେ । ମହାପୁରୁଷ କୃପା ପରବଶ ହୋଇ ତାଙ୍କର ମସ୍ତକରେ ଚରଣ ଅର୍ପଣ ପୂର୍ବକ ହସ୍ତ ଧାରଣ କରି ଆଶ୍ରମକୁ ନେଇ ଗଲେ ।

ଆଶ୍ରମଟି ସରଯୂ ନଦୀର ଉପକୂଳବର୍ତ୍ତୀ ଏକ ନିର୍ଜନ ସ୍ଥାନରେ ଅବସ୍ଥିତ । ମଧ୍ୟ ସ୍ଥଳରେ ଗୋଟିଏ କୁଟୀର । ମହାପୁରୁଷ ଆଶ୍ରମରେ ଉପସ୍ଥିତ ହେବା ମାତ୍ରେ ଜଣେ ଶିଷ୍ୟ ଜଳ ଆଣି ତାଙ୍କର ଚରଣ ପ୍ରକ୍ଷାଳନ କରିଦେଲେ । ମହାପୁରୁଷ କୁଟୀର ଭିତରକୁ ପ୍ରବେଶ କରିଲା ପରେ ଶିଷ୍ୟଟି କୁଟୀରର ଦ୍ୱାର ଦେଶରେ ଗୋଟିଏ ଆବରଣ କରିଦେଲେ ।

ଇତ୍ୟବସରରେ ରାଇଚରଣବାବୁ ସେହି ମହାପୁରୁଷଙ୍କର ସେବକ ମହାତ୍ମାଙ୍କୁ ପ୍ରଣାମ କଲେ । ସେ ମଧ୍ୟ ପ୍ରତି ନମସ୍କାର କରି ରାଇଚରଣବାବୁଙ୍କୁ ନେଇଯାଇ ଅନତି ଦୂରବର୍ତ୍ତୀ ଗୋଟିଏ ବୃକ୍ଷ ମୂଳରେ ଉପବେଶନ କରାଇ କହିଲେ, ଆଜକୁ କେତେଦିନ ହେଲା ପ୍ରଭୁ ଆପଣଙ୍କ ବିଷୟ ଉଲ୍ଲେଖ କରି ଆପଣଙ୍କର ଶାରୀରିକ ଅସୁସ୍ଥତା କଥା କହିଥିଲେ । ବର୍ତ୍ତମାନ ଆପଣ ସୁସ୍ଥ ଅଛନ୍ତି ତ ?" ରାଇଚରଣବାବୁ କହିଲେ, "ଆପଣମାନଙ୍କ କୃପାରେ ଶରୀର ମୋର ସୁସ୍ଥ । ପ୍ରଭୁ ମୋ ବିଷୟ କ'ଣ କହୁଥିଲେ" ? ସେବକ କହିଲେ, "ଗତ ସୂର୍ଯ୍ୟ ଗ୍ରହଣ ଦିନ ପ୍ରଭୁ ଧ୍ୟାନନିମଗ୍ନ ଥିଲେ । ଗ୍ରହଣ ପରେ କହି ଉଠିଲେ, "କି ଭାଗ୍ୟବାନ୍" ! ମୁଁ ପଚାରିଲି,

"ପ୍ରଭୁ ! କାହା ଭାଗ୍ୟର ଏତେ ପ୍ରଶଂସା କରୁଛନ୍ତି ?" ପ୍ରଭୁ ହସି ହସି କହିଲେ, "ଜଣେ ଲୋକ ବ୍ରାହ୍ମଣ ପୁରଶ୍ଚରଣ କରୁଥିଲେ, ତାଙ୍କର ଇଷ୍ଟଦେବୀ ମାଆ ମହାମାୟା ତାଙ୍କ ଉପରେ ପ୍ରସନ୍ନ ହୋଇ ତାଙ୍କୁ ଦର୍ଶନ ଦେଇ ଅଧମ ନିକଟକୁ ଆସିବାକୁ ଆଦେଶ ଦେଲେ ଏବଂ ମୋତେ ମଧ୍ୟ ଅନୁଗ୍ରହ ଓ ନିଗ୍ରହ କଲେ ।" ତାପରେ ମୁଁ କହିଲି, "ଆଜ୍ଞା, ଅନୁଗ୍ରହ ନିଗ୍ରହ କ'ଣ ? ମୁଁ ତ କିଛି ବୁଝି-ପାରିଲି ନାହିଁ ।" ପ୍ରଭୁ କହିଲେ, "କ'ଣ ଆଉ କହିବ ! ମୁଁ ମନେ ମନେ ପ୍ରତିଜ୍ଞା କରିଥିଲି ଯେ ଆଉ ଶିଷ୍ୟ କରିବି ନାହିଁ । ମାଆ ଅନୁଗ୍ରହପୂର୍ବକ ଦର୍ଶନ ଦେଇ ମୋତେ କୃତାର୍ଥ କରିଲେ ସତ, କିନ୍ତୁ ମୋର ପ୍ରତିଜ୍ଞା ଭଙ୍ଗ କରିବାର ଆଦେଶ କଲେ । କାର୍ଯ୍ୟତଃ ମୋତେ ନିଗ୍ରହ କରିଗଲେ । କରୁଣାମୟୀ ମହାମାୟା ଯାହାକୁ କୃପା କରନ୍ତି ତା'ପାଇଁ ସେ କେତେ ବ୍ୟାକୁଳା । ମାଆ ଯୋଗମାୟା ଯାହାପ୍ରତି ଅନୁକୂଳା ତା'ର ସୌଭାଗ୍ୟର ସୀମା ନାହିଁ । ଏହି ସୌଭାଗ୍ୟବାନ୍ ବ୍ୟକ୍ତିଦ୍ୱାରା ଜଗତର ବହୁ ମଙ୍ଗଳ ସାଧିତ ହେବ । ଏହାକୁ କୁହନ୍ତି, "ଯୋଗମାୟାର କୃପାବଳେ ଲୀଳାରେ ପ୍ରବେଶ ।" ମୁଁ ପ୍ରଶ୍ନ କଲି, "ପ୍ରଭୁ ! ଆଉ କେତେଦିନେ ସେହି ଭାଗ୍ୟବାନ୍ ବ୍ୟକ୍ତି ଏଠାକୁ ଆସିବେ ?" ପ୍ରଭୁ ଉତ୍ତରରେ କହିଲେ, "ଅତି ଅଳ୍ପଦିନ ଭିତରେ ଆସିବେ ।" ଏହିକଥା ଶୁଣି ରାଇଚରଣବାବୁ ପ୍ରେମାନନ୍ଦରେ ଆତ୍ମହରା ହୋଇ ଅଶ୍ରୁ ଗଦ୍‌ଗଦ୍ କଣ୍ଠରେ କହିଲେ ପ୍ରଭୁ କ'ଣ ପତିତପାବନ ! ମୋ ପରି ଏଇ ପତିତ, ପାମରକୁ ସେ ଏଠାକୁ ଆଣିଲେ ? ଧନ୍ୟ କରୁଣା ! ଧନ୍ୟ ପତିତ ପ୍ରତି ଦୟା ! ଏହିପରି ନାନା କଥୋପକଥନରେ ପ୍ରାୟ ଦେଢ଼ଘଣ୍ଟାକାଳ ଅତିବାହିତ ହେଲା ।

ଅନନ୍ତର ବଳମ୍ବରେ କୁଟୀର ଭିତରୁ ପ୍ରଭୁ ଆଗନ୍ତୁକଙ୍କୁ ଜଳଦ-ଗମ୍ଭୀର ସ୍ୱରରେ ସାନକରି ଆସିବାକୁ ଆଦେଶ କଲେ ।

ଶୁଣିବା ମାତ୍ରେ ରାଇଚରଣବାବୁ ସରଯୂ ନଦୀରେ ସ୍ନାନ କରି ଆସିବା ପରେ ଶିଷ୍ୟଙ୍କ ଦ୍ୱାରା ଦ୍ୱାଦଶ ତିଳକରେ ବିଭୂଷିତ ହେଲେ । ଶିଷ୍ୟ ପ୍ରଫୁଲ୍ଲ ଚିତ୍ତରେ ପ୍ରଭୁଙ୍କର ନିର୍ଦ୍ଦେଶ କ୍ରମେ ନିଜ କଣ୍ଠର ମାଳାଟିକୁ ରାଇଚରଣବାବୁଙ୍କ ଗଳାରେ ପିନ୍ଧାଇ ଦେଲେ । ଗୁରୁଦେବ ପ୍ରେମାନନ୍ଦରେ ବିଭୋର ହୋଇ ନିମୀଳିତ ନେତ୍ରରେ ବସିଛନ୍ତି । ତାଙ୍କର ଦୁଇ ନୟନରୁ ଅବିରତଧାରା ଅଶ୍ରୁବର୍ଷଣ ହେଉଛି । ଏମାନେ ଦୁଇଜଣ ମଧ୍ୟ କାନ୍ଦି କାନ୍ଦି ଅଧୀର । କି ଅପୂର୍ବ ଦୃଶ୍ୟ ! ଲୀଳାମୟଙ୍କର କି ଲୀଳା ! ପଶୁ, ପକ୍ଷୀ, ତରୁ, ଲତା, ସ୍ଥାବର, ଜଙ୍ଗମ ପ୍ରଭୃତି ମଧ୍ୟ ଯେପରି ପ୍ରେମାନନ୍ଦରେ ବିଭୋର । ରାଇଚରଣବାବୁ କାନ୍ଦି କାନ୍ଦି ଅଧୈର୍ଯ୍ୟ ହୋଇ ସେଇ ମହାପୁରୁଷଙ୍କର ଚରଣ ତଳେ ଲୋଟି ପଡ଼ିଲେ । ସେଇ କ୍ରନ୍ଦନର ରୋଳ ଶୁଣିଲେ ମଣିଷର ହୃଦୟ ତ ଦୂରର କଥା, ପାଷାଣ ପର୍ଯ୍ୟନ୍ତ ତରଳି ଯାଏ ।

କିଛିକ୍ଷଣ ପରେ ମହାପୁରୁଷ ରାଇଚରଣବାବୁଙ୍କୁ ସମ୍ମୁଖରେ ଉପବେଶନ କରାଇ କର୍ଣ୍ଣରେ ମନ୍ତ୍ର ପ୍ରଦାନ କଲେ । ଏହି ମନ୍ତ୍ର ପ୍ରଦାନ ସମୟରେ କ୍ଷଣେକ୍ଷଣେ ଏପରି ଅଦ୍ଭୁତ କମ୍ପନ ଆସିଛି ଯେ, ତାହାଙ୍କୁ ଧରି ରଖିବା ମହାପୁରୁଷଙ୍କ ପକ୍ଷରେ କଷ୍ଟକର ହୋଇ ପଡ଼ୁଛି । ମନ୍ତ୍ର ପ୍ରଦାନ ପରେ ଗୁରୁଦେବ ଶିଷ୍ୟଙ୍କୁ ବକ୍ଷରେ ଧାରଣ କରି କାନ୍ଦି କାନ୍ଦି ଆକୁଳ ହୋଇ ପଡ଼ିଲେ । ଅପୂର୍ବ ଦୃଶ୍ୟ ! ଉଭୟଙ୍କ ଅଶ୍ରୁ ଜଳରେ ଉଭୟ ସିକ୍ତ, ଉଭୟଙ୍କ କମ୍ପନରେ ଉଭୟେ କମ୍ପିତ; ଉଭୟଙ୍କ ମୁଖରେ ସେଇ ଏକ କଥା— "ଆହା ! ଆଜି ଧନ୍ୟ ହେଲି ।" କିଛିକ୍ଷଣ ପରେ ଗୁରୁଦେବ ଶିଷ୍ୟଙ୍କୁ ନିଜ ବକ୍ଷରୁ ଅପସାରଣ କଲେ । ଶିଷ୍ୟଙ୍କର ଦେହ କାଷ୍ଠ ପୁତ୍ତଳିକା ପରି ନିଶ୍ଚଳ, ନିସ୍ପନ୍ଦ । ଅପର ଶିଷ୍ୟଟି—

"ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେ ରାମ ହରେ ରାମ ରାମ ରାମ ହରେ ହରେ ।"

ଏଇ ନାମ ଗାଇ ଚାଲିଛନ୍ତି ଆଉ ପ୍ରେମାଶ୍ରୁଜଳରେ ତାଙ୍କ ବକ୍ଷସ୍ଥଳ ଭାସି ଯାଉଛି । ବହୁ ସମୟ ଧରି ଏଇପରି ଅବସ୍ଥାରେ ରହି ନବାଗତ ଶିଷ୍ୟ କାଞ୍ଚିତ ସଂଜ୍ଞା ଲାଭ କରିବା ପରେ ଗୁରୁଦେବ ତାଙ୍କୁ ଉପଦେଶ ପ୍ରଦାନ କରିବାକୁ ଲାଗିଲେ ।

# ଶ୍ରୀ ଶ୍ରୀ ଗୁରୁଦେବଙ୍କ ଉପଦେଶ

ଗୁରୁଦେବ—ବାବା, ସ୍ଥିର ହୁଅ, ପ୍ରାପ୍ତ ବସ୍ତୁ ହୃଦୟରେ ଧାରଣ କର । ଏକାଗ୍ରମନରେ ନିତାଇଙ୍କୁ ଡାକ, ଆନନ୍ଦ ପାଇବ ।

ଶିଷ୍ୟ—ପ୍ରଭୁ ! ମୁଁ ବୃଥା ରସରେ ମଗ୍ନ ହୋଇ ଏତେ ଦିନ କଟାଇ ଦେଇଛି । କିପରି ନିତାଇ ଗୌରଙ୍କ କୃପା ଲାଭ କରିବି ? ଯଦି କୃପା କରି ଚରଣ ତଳେ ସ୍ଥାନ ଦେଇଛନ୍ତି, ପଥ ପ୍ରଦର୍ଶନ ନକରାଇଲେ ଏ ଅନ୍ଧର ଗତି କ'ଣ ହେବ ?

ଗୁରୁଦେବ—ନିନ୍ଦା ଶୂନ୍ୟ ହୃଦୟରେ ନମ୍ର ଭାବରେ ମନୁଷ୍ୟ, ପଶୁ, ପକ୍ଷୀ, କୀଟ, ପତଙ୍ଗ ସ୍ଥାବର, ଜଙ୍ଗମ ସମସ୍ତଙ୍କୁ ପ୍ରଣାମ ଓ ବନ୍ଦନା କରିବ । ଏ ଜଗତରେ ଦୃଶ୍ୟାଦୃଶ୍ୟ ଯାବତୀୟ ପଦାର୍ଥ କୃଷ୍ଣଙ୍କର ପ୍ରକାଶ ବୋଲି ଜାଣିବ । ନିଜକୁ ତୃଣ ଲତାଠାରୁ ଆହୁରି ନୀଚ ଜ୍ଞାନ କରି ସର୍ବସାଧାରଣ ଜୀବକୁ ଉଚ୍ଚଜ୍ଞାନ ସମ୍ମାନ କରିବ । ଜୀବ ପ୍ରତି ଦୟା, ନାମରେ ରୁଚି ଓ ବୈଷ୍ଣବ ସେବାହିଁ ପ୍ରଧାନ ଧର୍ମ ବୋଲି ମନେକରିବ ।

ଶିଷ୍ୟ—ପ୍ରଭୁ ! ମନରେ ଗୋଟିଏ ସନ୍ଦେହ ଜାତ ହୋଇଛି, ଅନୁମତି ଦେଲେ ଦାସ ପ୍ରକାଶ କରିବ ।

ଗୁରୁଦେବ—ବାବା ! ସ୍ୱଚ୍ଛନ୍ଦରେ—ପ୍ରାଣ ଖୋଲି କୁହ । ଯେଉଁ ବିଷୟରେ ସନ୍ଦେହ ହେଉଛି, ମୋତେ ଜିଜ୍ଞାସା କରିବାକୁ କୁଣ୍ଠିତ ହେବାର କୌଣସି କାରଣ ନାହିଁ ।

ଶିଷ୍ୟ ! ଆପଣ ଆଦେଶ ଦେଲେ ଯେ, ଜଗତର ସର୍ବସାଧାରଣ ବସ୍ତୁ ଅପେକ୍ଷା ନିଜକୁ ହୀନ ମନେ କରିବାକୁ ହେବ, ପୁଣି କହିଲେ ଯେ ଜୀବ ପ୍ରତି ଦୟା ଆଚରଣ କରିବ । ହୀନ ହୋଇ ଆଚରଣ କରିବ । ହୀନ ହୋଇ ଉତ୍ତମ ବସ୍ତୁ ପ୍ରତି କପରି ଦୟା ସମ୍ଭବ, ବୁଝିପାରିଲି ନାହିଁ ;

ଗୁରୁଦେବ—ବେଶ୍ ସୁନ୍ଦର କଥା । ତେବେ ଶୁଣ, ସାଧାରଣତଃ ଦୟା ଶବ୍ଦ କହିଲେ ଆମେ ଯାହା ବୁଝିଥାଉ, ତୁମେ ଯାହା କହିଲ "ଉତ୍ତମ ନହେଲେ ହୁଏ ନା" ସେ ଠିକ୍ କଥା ; ତେବେ ମହାପ୍ରଭୁଙ୍କର ବାକ୍ୟ ସେ ଉଦ୍ଦେଶ୍ୟରେ ନୁହେଁ ; କାରଣ—

"ତୃଣା ଦପି ସୁନୀଚେନ ତରୋରିବ ସହିଷ୍ଣୁନା ।
ଅମାନିନା ମାନଦେନ କୀର୍ତ୍ତନୀୟଃ ସଦା ହରିଃ ॥
ଜୀବେ ଦୟା ନାମେ ରୁଚି ବୈଷ୍ଣବ-ସେବନ ।
ଏହାଠାରୁ ଧର୍ମ ନାହିଁ ଶୁଣ ସନାତନ ।"

ଏଇ ଦୁଇଟି ବାକ୍ୟ ତ ଶ୍ରୀମନ୍ ମହାପ୍ରଭୁଙ୍କର ଶ୍ରୀମୁଖର । ଅର୍ଥାନ୍ତର ଘଟିଲେ ଦୋଷ । ଏଇ ଜୀବେ ଦୟା, ଧନୀର ଅର୍ଥାତ୍ ଦାନ ବା ରଜାର ନିଗ୍ରହାନୁଗ୍ରହର ନ୍ୟାୟ ନୁହେଁ । ଏ ଦୟା

ପର ଦୁଃଖରେ କାତର ହୋଇ ଭଗବାନଙ୍କ ନିକଟରେ ପ୍ରାର୍ଥନା । ପିତାମାତା ବା ଗୁରୁଦେବ ପୀଡ଼ିତ ବା ବିପଦଗ୍ରସ୍ତ ହେଲେ ସନ୍ତାନ ଅଥବା ଶିଷ୍ୟ ତାଙ୍କର ଆରୋଗ୍ୟ ଲାଭ ନିମିତ୍ତ ଭଗବାନଙ୍କ ନିକଟରେ ଯେଉଁ ପ୍ରାର୍ଥନା କରେ, ସେଥିରେ କ'ଣ ସନ୍ତାନ ବା ଶିଷ୍ୟର ପ୍ରାଧାନ୍ୟ ପ୍ରକାଶ ପାଏ ?

ତୁମକୁ ଯଦି କେହି ଜଣେ ଗୋଟିଏ ଭଲ ବସ୍ତୁ ପ୍ରଦାନ କରେ ଏବଂ ତୁମେ ସେହି ବସ୍ତୁ ଯଦି ତୁମ ଗୁରୁବର୍ଗଙ୍କୁ କିଛିତ ବଣ୍ଟନ କରିଦିଅ, ସେଥିରେ କ'ଣ ତାଙ୍କର ଗୁରୁତ୍ୱର ହାନି ଘଟେ ଆଉ ତୁମର ଗୁରୁତ୍ୱର ପ୍ରକାଶ ହୁଏ ? ନିତାଇ ଗୃହ କୃପା କରି ଯଦି ତୁମକୁ ନାମ, ମନ୍ତ୍ର ବା ନାନା ପ୍ରକାର ସତ୍ ଉପଦେଶ ପ୍ରଦାନ କରନ୍ତି ଏବଂ ତୁମେ ଯଦି ସେଇ ସମସ୍ତ ଅପରକୁ ପ୍ରଦାନ କର, ତେବେ ସେଥିରେ କ'ଣ ତୁମର ଦାତୃତ୍ୱ ଜ୍ଞାନ ଜନ୍ମିବ ? "ଦାନ" ଶବ୍ଦର ଅର୍ଥ ନିଜସ୍ୱତ୍ୱ ଧ୍ୱଂସ ପୂର୍ବକ ପରସ୍ୱତ୍ୱ ଉତ୍ପତ୍ତି । ଏଇ ନାମ, ମନ୍ତ୍ର ବା ସଦୁପଦେଶର ଦାତା ତୁମେ ହେଲ କି ? ଦାନ ଦିନଠାରୁ ତୁମର ସେଇ ନାମ ମନ୍ତ୍ରର ସ୍ୱତ୍ୱ ଉଚ୍ଛେଦ ହେଲା କି ? ମୋ ମତରେ ଏହାକୁ "ଦାନ" ନ କହି "ଗ୍ରହଣ" କହିବା ଉଚିତ୍ । ଦୟା କରିବା ନ କହି ଦୟା ଗ୍ରହଣ କରିବା ବୋଲି କହିବା ପ୍ରୟୋଜନ । କାରଣ ମନେକର, କୌଣସି ବିଷୟାସକ୍ତ ବ୍ୟକ୍ତି ବିଷୟ ତାପରେ ତାପିତ ହୋଇ ତୁମ ନିକଟରେ ଉପସ୍ଥିତ ହେଲେ । ତୁମେ ତାଙ୍କ ଦୁଃଖରେ ଦୁଃଖିତ ହୋଇ ଭଗବାନଙ୍କୁ ଜଣାଇଲ ବା ତାଙ୍କୁ ଦୁଇଟି ସଦୁପଦେଶ ଦେଲ । ଏଇ ଭଗବାନଙ୍କୁ ଡାକିବା ବା ଭଗବତ୍ ଆଲୋଚନା କରିବାର ପ୍ରବର୍ତ୍ତକ ବା ଗୁରୁ ସେଇ ବିଷୟୀ ବ୍ୟକ୍ତି ହେଲେ ନାହିଁ କି ? ଏଇ ଦୟାର କ୍ରିୟା ଶାରୀରିକ ନୁହେଁ, ଏଇଟି

ମାନସିକ । ମନେକର ଜଣେ ବ୍ୟକ୍ତି ତୁମ ନିକଟରୁ ମନ୍ତ୍ର ଗ୍ରହଣ କରିବାକୁ ଆସିଲେ । ତୁମେ ତାଙ୍କୁ ମନ୍ତ୍ର ପ୍ରଦାନ କରିବା ମାତ୍ରେ ସେ ତୁମକୁ ମନ ପ୍ରାଣ ସମର୍ପଣ କଲେ । ତୁମେ ତାଙ୍କର ଉପାସ୍ୟ ସ୍ଥାନୀୟ ହୋଇପଡ଼ିଲ । ସେ ସମୟରେ ତୁମର ତାଙ୍କୁ କଅଣ ମନେ କରିବା ଉଚିତ ?

ଶିଷ୍ୟ—ପ୍ରଭୁ କ'ଣ ଆଉ ମନେ କରିବ ? ସେ ଶିଷ୍ୟ, ଆଉ ଯିଏ ମନ୍ତ୍ରଦାତା ସେ ହେଉଛନ୍ତି ଗୁରୁ ।

ଗୁରୁଦେବ—ଭୁଲ୍ କହିଲ, ତୁମ ଅନ୍ତରର ଅବସ୍ଥାକୁ ତୁମେ ଅନୁସନ୍ଧାନ କରି ଦେଖ, ତୁମେ ଶିଷ୍ୟର ଧାରଣା ଅନୁଯାୟୀ ପାଇ କି ନା ! ମୋ ମତରେ ମନ୍ତ୍ରପ୍ରଦାନ ମାତ୍ରେ ସେ ତୁମର ଶିକ୍ଷାଗୁରୁ ହେଲେ । ଗୁରୁନିଷ୍ଠା, ଗୁରୁବାକ୍ୟରେ ଦୃଢ଼ବିଶ୍ୱାସ ଏବଂ ଗୁରୁସେବା ଏହି ସକଳ ଶିକ୍ଷା ଦେବାଲାଗି ନିତାଇଗୃହ ଶିଷ୍ୟରୂପ ଧାରଣ କରି ତୁମ ନିକଟକୁ ଆସିଛନ୍ତି । ଏହିପରି କେବଳ ଶିଷ୍ୟ ବୋଲି ନୁହେଁ, ହୁଏତ ଜଣେ ତୁମକୁ ସାଧୁ ବା ମହାତ୍ମା ଜ୍ଞାନ କରି ଭକ୍ତି କରିବାକୁ ଲାଗିଲେ । ସେତେବେଳେ ତୁମର ସ୍ମରଣ ରଖିବା କର୍ତ୍ତବ୍ୟ ଯେ, "ମୁଁ କୌଣସି ସାଧୁ ମହାତ୍ମା ଦେଖିଲେ ଆଗେ ତାଙ୍କର ଦୋଷ ଅନୁସନ୍ଧାନ କରିଥାଏ, ଆଉ ଏ ବ୍ୟକ୍ତି ମୋ ପରି ଅବିଶ୍ୱାସୀ, ବଞ୍ଚକ ପାଷାଣ୍ଡକୁ ସାଧୁ ଜ୍ଞାନ କରୁଛନ୍ତି । ଅତଏବ ଏଇ ବ୍ୟକ୍ତି ହିଁ ପ୍ରକୃତ ଅଦୋଷଦର୍ଶୀ । ଏଇ ତ ପ୍ରକୃତ ସାଧୁ, ଏଇ ତ ମୋର ଶିକ୍ଷା ଗୁରୁ । ଏହିପରି ପଶୁପକ୍ଷୀ, କୀଟ ପତଙ୍ଗାଦିଙ୍କର ଗୁଣ ଅନୁସନ୍ଧାନକରି ତାଙ୍କ ନିକଟରେ ନିଜର ହୀନତା ପ୍ରତିପନ୍ନ କରିବାକୁ ହେବ । ଶାସ୍ତ୍ର କହୁଛି, 'ତଥାପି

ଗୁରୁର ଧର୍ମ ଗୌରବ ବର୍ଜିତ ।’ ଏଇ ବିଗ୍ଧରଶକ୍ତି ଥିବାରୁ ମନୁଷ୍ୟ ସର୍ବପ୍ରାଣୀ ଅପେକ୍ଷା ଶ୍ରେଷ୍ଠ । ଏଇ ଜ୍ଞାନ ନଥିଲେ ମନୁଷ୍ୟ ପଶୁ ମଧ୍ୟରେ ଗଣ୍ୟ ।”

ଶିଷ୍ୟ—ପ୍ରଭୁ ! କୃତାର୍ଥ ହେଲି । ଆଉ ଗୋଟିଏ ସନ୍ଦେହ ଅଛି । ବୈଷ୍ଣବ ସେବାର ଅର୍ଥ ଭଲଭାବରେ ବୁଝିପାରିଲି ନାହିଁ ; ବୈଷ୍ଣବ ସେବାରେ ଅର୍ଥାଦର ପ୍ରୟୋଜନ ! ତାହାହେଲେ ଗୃହତ୍ୟାଗୀକୁ ବୈଷ୍ଣବ ସେବା କରିବାକୁ ହେଲେ କ’ଣ ଭିକ୍ଷା କରିବାକୁ ହେବ ?

ଗୁରୁଦେବ—ବାବା, ଯିଏ ଯେଉଁ ଅବସ୍ଥାର ଲୋକ ତାକୁ ସେହି ଅବସ୍ଥାରେ ହିଁ ବୈଷ୍ଣବ ସେବା କରିବାକୁ ହେବ । ଜଣେ ଉଦାସୀ-ବୈଷ୍ଣବ ଭିକ୍ଷା ଲବ୍ଧ ବସ୍ତୁ ଭଗବାନଙ୍କୁ ଭୋଗ ଦେଇ ଗ୍ରହଣ କରିବେ । ଏହି ସମୟରେ ଆଉ ଜଣେ କ୍ଷୁଧାର୍ତ୍ତ ବୈଷ୍ଣବ ଆସି ଉପସ୍ଥିତ ହେଲେ । ସେତେବେଳେ ଲବ୍ଧ ବସ୍ତୁର ଅର୍ଦ୍ଧାଂଶ କ୍ଷୁଧାର୍ତ୍ତକୁ ଦେଇ ଅପର ଅର୍ଦ୍ଧାଂଶ ଗ୍ରହଣ କରିବା ଉଚିତ୍ । ଆଶ୍ରମତ୍ୟାଗୀ ପକ୍ଷରେ ଅନାୟାସଲବ୍ଧ ବସ୍ତୁଦ୍ୱାରା ବୈଷ୍ଣବ ସେବା କରଣୀୟ । ଅଭାବରେ ସୁମିଷ୍ଟ ବାକ୍ୟ, ସୁଶୀତଳ ଜଳ ତୃଣାଦି ଆସନ ପର୍ଯ୍ୟନ୍ତ ବ୍ୟବସ୍ଥା ମଧ୍ୟ ରହିଅଛି । ଆଉ ସେବା ଶବ୍ଦର ଅର୍ଥ କେବଳ ଖାଇବାକୁ ଦେବା ନୁହେଁ ପୀଡ଼ିତର ଶୁଶ୍ରୂଷା, ତୃଷାର୍ତ୍ତକୁ ଜଳଦାନ, ଅଜ୍ଞାନୀକୁ ଜ୍ଞାନଦାନ ପ୍ରଭୃତି ସଦନୁଷ୍ଠାନ ମଧ୍ୟ ସେବାର ଅନ୍ତର୍ଭୁକ୍ତ ।

ଶିଷ୍ୟ—ମୋର ସମସ୍ତ ସନ୍ଦେହ ଦୂରହେଲା । ଅପର କର୍ତ୍ତବ୍ୟ ଆଦେଶ କରନ୍ତୁ ।

ଗୁରୁଦେବ—ଶାସ୍ତ୍ର, ନାମ, ମନ୍ତ୍ର, ଗୁରୁ ଏବଂ ବୈଷ୍ଣବ ଏ ସମସ୍ତଙ୍କୁ ଏକ ବସ୍ତୁ ବୋଲି ଗଣିବାକୁ ହେବ । କୃଷ୍ଣଙ୍କୁ ଅର୍ପିତ ବସ୍ତୁ ମହାପ୍ରସାଦ ଜ୍ଞାନକରି ଗ୍ରହଣ କରିବ । ମହାପ୍ରସାଦ ସ୍ପର୍ଶ ଦୋଷରେ ନଷ୍ଟ ହୋଇପାରେନା । କାୟମନୋବାକ୍ୟରେ ପ୍ରାଣୀ ମାନଙ୍କେ ମନରେ ଉଦ୍‌ବେଗ ଦେବ ନାହିଁ । ନାମ ସଙ୍କୀର୍ତ୍ତନ ହିଁ ଏକମାତ୍ର ଅବଲମ୍ବନୀୟ ବସ୍ତୁ । କଳିକାଳରେ ସଙ୍କୀର୍ତ୍ତନ ଯଜ୍ଞରେ କୃଷ୍ଣ ଆରାଧନା ହିଁ ଶାସ୍ତ୍ରାନୁମୋଦିତ ପନ୍ଥା ।

ଏହାପରେ ନାନା କଥୋପକଥନ ହେବାକୁ ଲାଗିଲା । ମହାପୁରୁଷଙ୍କର ସେବକ ଭିକ୍ଷାକରି ଯାହାକିଛି ଚାଉଳ, ଅଟା ଇତ୍ୟାଦି ପାଇଥିଲେ, ଇତ୍ୟବସରରେ ତାହାକୁ ରନ୍ଧନ କରିବାର ଆୟୋଜନ କଲେ । ମହାପୁରୁଷ ମଧ୍ୟାହ୍ନ ସ୍ନାନରେ ବାହାରିଲେ । ରାଇଚରଣବାବୁ ପୂର୍ବୋକ୍ତ ସେବକଙ୍କର ଆଦେଶକ୍ରମେ ସେବାର କାର୍ଯ୍ୟରେ ଆନୁକୂଲ୍ୟ କରିବାକୁ ଲାଗିଲେ । ବେଳ ତୃତୀୟ ପ୍ରହର ଭୋଗ ପ୍ରସ୍ତୁତ ହେଲା । ମହାପୁରୁଷ ଆସି ଇଷ୍ଟଦେବଙ୍କୁ ଭୋଗ ନିବେଦନ କଲେ । କିଛିକ୍ଷଣ ପରେ ନିର୍ଦ୍ଦିଷ୍ଟ ସମୟରେ ମହାପୁରୁଷ ଗୋଟିଏ ବୃକ୍ଷମୂଳରେ ଗୋଟିଏ କୁଶାସନରେ ଉପବେଶନ ପୂର୍ବକ ପ୍ରସାଦ ଲାଭକରି ପୁନର୍ବାର କୁଟୀରକୁ ପ୍ରବେଶ କଲେ । ତତ୍‌ପରେ ଶିଷ୍ୟ ଦୁଇଜଣ ପରମ ଆନନ୍ଦରେ ପ୍ରସାଦ ପାଇ ଗୁରୁଦେବଙ୍କ ନିକଟରେ ଉପସ୍ଥିତ ହେଲେ ।

ଅପରାହ୍ନରେ ମହାପୁରୁଷ ଶ୍ରୀ ଶ୍ରୀ ଚୈତନ୍ୟ ଚରିତାମୃତ ପାଠ କରିବାକୁ ଆଦେଶ କଲେ, ପୂର୍ବୋକ୍ତ ସେବକ ଯଥାରୀତି ଶ୍ରୀଗ୍ରନ୍ଥ ପାଠ କରିବାକୁ ଆରମ୍ଭ କଲେ । ମହାପୁରୁଷଙ୍କ ଦୁଇ

ଗଣ୍ଡଦେଶରୁ ବକ୍ଷସ୍ଥଳ ପର୍ଯ୍ୟନ୍ତ ଦୁଇଟି ଜଳାଧାରାର ଚିହ୍ନ ହୋଇ-ଗଲା । ସନ୍ଧ୍ୟାକାଳ ଉପସ୍ଥିତ ଦେଖି ସେବକ ଗ୍ରନ୍ଥ ପାଠ ବନ୍ଦ କଲେ । ପରେ ପରେ ଆରତି କୀର୍ତ୍ତନ ଆରମ୍ଭ ହେଲା । ଆରତି କୀର୍ତ୍ତନ ପରେ ନାମ ସଂକୀର୍ତ୍ତନ ହେବାକୁ ଲାଗିଲା । କୀର୍ତ୍ତନ ସମାପ୍ତି ପରେ ସେ ମାଳା ଘେନି ଜପରେ ବସିଲେ ।

# ନୂତନ ଶିଷ୍ୟଙ୍କର ନବ ଭାବୋଦୟ

ତପୋବନରେ ସମସ୍ତେ ଧ୍ୟାନ, ଜପ ପ୍ରଭୃତି ସ୍ୱ-ସ୍ୱ ଆରାଧନାରେ ବ୍ୟସ୍ତ । ନବାଗତ ଶିଷ୍ୟ ପକ୍ଷରେ ଆଜି ସକଳ ନୂତନ । ପ୍ରତି ବୃକ୍ଷଲତା, ପଶୁପକ୍ଷୀ, ଯାହା ପ୍ରତି ଦୃଷ୍ଟି ନିପତିତ ହେଉଛି, ସେ ତାଙ୍କର ମନପ୍ରାଣ ହରଣ କରୁଛି । ପ୍ରେମାନନ୍ଦରେ ଅଧୀର ହୋଇ ସେ "ଜୟ ନିତ୍ୟାନନ୍ଦ ରାମ, ଜୟ ଗୌରଗୁଣଧାମ" କହି ନୃତ୍ୟ କରୁଛନ୍ତି । ସମୟ ସମୟରେ ଆଶ୍ରମର ପବିତ୍ର ଧୂଳିରେ ଲୋଟିଯାଇ ବହ୍ନିବନର ବିଷୟ—ବିଷଧର—ଦଂଶନଜ୍ୱାଳାକୁ ଅନୁଭବ ନକରି ପରମ ଶାନ୍ତି ସାଗରରେ ସନ୍ତରଣ କରୁଛନ୍ତି । ପ୍ରେମାନନ୍ଦରେ ଆତ୍ମହରା ହୋଇ ସେ ସବୁଭିତରେ ଈଶ୍ୱର ଦର୍ଶନ କରୁଛନ୍ତି । ପ୍ରେମମୟ ଶ୍ରୀ ଗୁରୁଦେବ ନବାଗତ ଶିଷ୍ୟଙ୍କୁ ଏତେ ଅଧିକ ପ୍ରେମ ମଦିରା ପାନ କରାଇ ଦେଇଛନ୍ତି ଯେ, ଶିଷ୍ୟ ପୂର୍ଣ୍ଣ-ମାତ୍ରାରେ ଉନ୍ମତ୍ତ ହୋଇପଡ଼ିଛନ୍ତି ! ତାଙ୍କର ବାହାର ଜ୍ଞାନ ନାହିଁ । ସ୍ଥାବର, ଜଙ୍ଗମ ଯାହାକୁ ଦେଖୁଛନ୍ତି, ପ୍ରେମରେ ବିଭୋର ହୋଇ ଆଲିଙ୍ଗନ କରୁଛନ୍ତି । କି ମଧୁମୟ ଦୃଶ୍ୟ ! କି ମଧୁର ସେ ପ୍ରେମମୟ ଭାବ ! ପ୍ରେମମୟ ନିତାଇ ଗୌରଙ୍କର କି ମଧୁର ଲୀଳା ! ଆଜି ସ୍ଥିର, ଧୀର, ଗମ୍ଭୀର ରାଇଚରଣବାବୁ ପ୍ରେମ ପାଗଳ ।

କେତେବେଳେ ହସ, କେତେବେଳେ କାନ୍ଦ, କେତେବେଳେ ନୃତ୍ୟ, କେତେବେଳେ ପ୍ରେମରେ ଅଚୈତନ୍ୟ ଅବସ୍ଥାରେ ଭୂମିରେ ପଡ଼ି ଯାଉଛନ୍ତି, ପୁଣି ଉଠୁଛନ୍ତି । ଏହିପରି ଭାବରେ ସାରା ରାତି କଟିଗଲା । ବ୍ରାହ୍ମମୁହୂର୍ତ୍ତରେ ମହାପୁରୁଷ ସରଯୂ ନଦୀରେ ସ୍ନାନକରି ଆଶ୍ରମକୁ ଆଗମନମାତ୍ରେ ଶିଷ୍ୟ ପଦ ପ୍ରକ୍ଷାଳନ କରିଦେବାପରେ କୁଟୀର ମଧ୍ୟକୁ ପ୍ରବେଶ କଲେ । ଶିଷ୍ୟ ଦ୍ୱାର ସମ୍ମୁଖରେ ଆବରଣ ଦେଇ ସ୍ନାନାଦି କରିବାକୁ ଗଲେ । ଇତି ମଧ୍ୟରେ ନବଶିଷ୍ୟ ସ୍ନାନାଦି କରି ଆଶ୍ରମରେ ଆସି ଦେଖନ୍ତି ଯେ, ଗୁରୁଦେବ କୁଟୀର ମଧ୍ୟରେ ଧ୍ୟାନ-ନିମଗ୍ନ । ସେତେବେଳେ ତାଙ୍କ ନିକଟରେ କୌଣସି ବିଷୟ ଜିଜ୍ଞାସା କରିବାର ଅବକାଶ ନ ପାଇ ସେ ନିଃଶବ୍ଦରେ ଗୋଟିଏ ବୃକ୍ଷ ମୂଳରେ ବସି ଗୁରୁଦତ୍ତ ମନ୍ତ୍ର ଜପ କରିବାକୁ ଲାଗିଲେ । କିଛିକ୍ଷଣପରେ ପୁରାତନ ଶିଷ୍ୟଙ୍କ ଠାରୁ ତିଳକ ମାଟି ଗ୍ରହଣ କରି ନିଜ ହସ୍ତରେ ଦ୍ୱାଦଶ ତିଳକ ଦେଇ ଦର୍ପଣରେ ନିଜର ମୁଖ ଦେଖି ଚକ୍ଷୁ ଜଳରେ ବକ୍ଷ ଭସାଇ ଦେଲେ ।

ମହାପୁରୁଷଙ୍କର ଦ୍ୱାର ଉନ୍ମୁକ୍ତ ହେଲା ।

ଶିଷ୍ୟଦ୍ୱୟ ସେତେବେଳେ ଦ୍ୱାରଦେଶରେ ଉପସ୍ଥିତ ହୋଇ ସାଷ୍ଟାଙ୍ଗ ପ୍ରଣିପାତ କଲେ ।

ଶ୍ରୀ ଗୁରୁଦେବ ପାଠ କରିବାକୁ ଆଦେଶ କରନ୍ତେ, ପ୍ରଥମ ଶିଷ୍ୟ ପ୍ରଥମେ ନରୋତ୍ତମ ଠାକୁର ମହାଶୟଙ୍କ ପ୍ରାର୍ଥନା, ପରେ ପ୍ରେମଭକ୍ତି ଚନ୍ଦ୍ରିକା ପାଠ କରିବାକୁ ଲାଗିଲେ । ଗୁରୁଶିଷ୍ୟ ଉଭୟ ପ୍ରେମାନନ୍ଦରେ ବିଭୋର । ଉଭୟଙ୍କର ଗଦ୍‌ଗଦ୍ କଣ୍ଠ, ନୟନରେ ଅବିରତ ଅଶ୍ରୁଧାରା । ସମୟ ସମୟରେ ପାଠ ବନ୍ଦ ହୋଇ-ଯାଉଛି । ନବାଗତ ଶିଷ୍ୟ ଅଳ୍ପ ଦୂରରେ ବସି ପାଠ ଶୁଣୁଛନ୍ତି,

କୋଳ ଉପରେ କାନ୍ଦୁଛନ୍ତି । ତାଙ୍କର ମଧ ନୟନ ଅଶ୍ରୁରେ ବକ୍ଷ ଭାସିଯାଉଛି ।

# ଶ୍ରୀ ଶ୍ରୀ ଗୁରୁଦେବଙ୍କ ନିକଟରୁ ଆଦେଶ ପ୍ରାପ୍ତି

ପାଠ ଶେଷ ହେବାପରେ ଗୁରୁଦେବ ଆଦେଶ କଲେ—ଦେଖ "ବାବା, ଆଉ ଏଠାରେ ତୁମର ବେଶୀଦିନ ରହିବାର ପ୍ରୟୋଜନ ନାହିଁ । ପ୍ରାପ୍ତବସ୍ତୁ ହୃଦୟରେ ଧାରଣକରି ତୁମେ ଦେଶେ, ଦେଶେ, ଗ୍ରାମେ ଗ୍ରାମେ ନଗରେ ନଗରେ ନାମ ସଂକୀର୍ତ୍ତନ କରି ଚାଲ ।"

ନବଶିଷ୍ୟ—ପ୍ରଭୁ ! ମୋ ମନରେ ବଡ଼ ଆଶା ଯେ, ଆପଣଙ୍କ ଶ୍ରୀଚରଣ ତଳେ ପଡ଼ିରହି ଚରଣ ସେବା କରିବି ।

ଗୁରୁଦେବ—ବାବା ! ସେବା ଅର୍ଥ, ସୁଖ ଦେବା ! ମୋ ନିକଟରେ ରହି ମୋର ସେବା କଲେ ମୁଁ ଯେତେ ସୁଖୀ ହେବି, ଜଗତରେ ନାମ ପ୍ରଚାର କରି ନିତାଇଚାନ୍ଦଙ୍କର ଆଦେଶ ପ୍ରତିପାଳନ କଲେ ମୁଁ ତା'ଠାରୁ ଅଧିକ ପରିମାଣରେ ସୁଖ ଲାଭ କରିବି । ଯଦି ଏ ଅଧମ ପ୍ରତି ତୁମର ଗୁରୁ ଜ୍ଞାନ ହୋଇଥାଏ, ତେବେ ଗୁରୁ—ଆଜ୍ଞା ପାଳନ କରିବା ତ ତୁମର ସର୍ବପ୍ରଧାନ କର୍ତ୍ତବ୍ୟ କର୍ମ । ଏ ବିଷୟରେ ଆଉ କୌଣସି ଆପତ୍ତି ନକରି ନିତାଇ ଚାନ୍ଦଙ୍କର ଆଦେଶ ପ୍ରତିପାଳନ କରି ମୋତେ କୃତାର୍ଥ କର ।

ଶିଷ୍ୟ—ପ୍ରଭୁ, ମୁଁ ତ ଏ ସମସ୍ତ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ । କିପରି ଭାବରେ ଚଳିବାକୁ ହେବ ଆଦେଶ କରନ୍ତୁ ଏବଂ ଉପଦେଶ ଦିଅନ୍ତୁ ।

ଗୁରୁଦେବ—କାଲି ଯେଉଁପରି ଉପଦେଶ ଦେଇଛି, ସେହିପରି ଆଚରଣ କରିବ । କାହାରି ନିକଟରୁ କୌଣସିପ୍ରକାର ବୃତ୍ତି ଗ୍ରହଣ କରିବ ନାହିଁ । ଅଯାଚିତ ଭିକ୍ଷାବୃତ୍ତି ଅବଲମ୍ବନରେ ଜୀବନ ଧାରଣ କରିବ । ଭଗବାନଙ୍କୁ ନିବେଦନ ନକରି କୌଣସି ବସ୍ତୁ ଗ୍ରହଣ କରିବ ନାହିଁ । ସର୍ବଦା ସତ୍‌ସଙ୍ଗରେ ବାସ କରିବ ।

ଶିଷ୍ୟ—ବାବା, ସତ୍‌ସଙ୍ଗ କିପରି ଜାଣିବି ?

ଗୁରୁଦେବ—ଜଗତର ଯାବତୀୟ ପଦାର୍ଥକୁ ସତ୍‌ଜ୍ଞାନ କରି କେବଳ ଆପଣାକୁ ଅସତ୍ ମନେ କରିବାକୁ ହେବ । ତେବେ ସଙ୍ଗ କରିବାକୁ ହେଲେ ସ୍ୱଜାତୀୟ ସାଧୁସଙ୍ଗ କରିବା ଉଚିତ୍ । ଅର୍ଥାତ୍ ଯିଏ ନିଜଗୁରୁ—ଉପଦିଷ୍ଟ ପନ୍ଥାନୁଯାୟୀ ବିଶୁଦ୍ଧ ସଦାଚାରୀ ହୋଇଥିବେ, ସେ ଗୃହସ୍ଥ ହୁଅନ୍ତୁ, ଅବା ଉଦାସୀନ ହୁଅନ୍ତୁ, ତାଙ୍କର ସଙ୍ଗ କରିବା ବିଧେୟ । ଯେତେ-ଦିନ ଉକ୍ତରୂପ ସଙ୍ଗ ନମିଳୁଛି, ସେତେଦିନ ପର୍ଯ୍ୟନ୍ତ ସଦ୍‌ଗ୍ରନ୍ଥ ପାଠ, ନାମ ଏବଂ ଶ୍ରୀମୂର୍ତ୍ତିର ସଙ୍ଗ କରିବ ।

ଶିଷ୍ୟ—କେଉଁ କେଉଁ ଗ୍ରନ୍ଥ ଆମର ବିଶେଷ ଭାବରେ ଆଲୋଚ୍ୟ ଓ ଅବଲମ୍ବନୀୟ ?

ଗୁରୁଦେବ—ଆଦି ପୁରୁଷ ଗୋବିନ୍ଦ, ଆଦିକବି ବ୍ରହ୍ମାଙ୍କର ହୃଦୟରେ ପ୍ରେରଣା ଦେଇ ବେଦ ସୃଷ୍ଟି କଲେ । କ୍ରମେ ଏହା

ଉପନିଷଦ, ଷଡ଼ଦର୍ଶନ, ଅଷ୍ଟାଦଶ ପୁରାଣ, ତନ୍ତ୍ର, ସଂହିତା, ଉପପୁରାଣ ଆଦି ଅନେକ ରୂପରେ ବିସ୍ତାର ପ୍ରାପ୍ତ ହେଲ ! ବ୍ରହ୍ମା ଦେଖିଲେ ଯେ, ଶାସ୍ତ୍ର ବିଧି ଅତ୍ୟନ୍ତ ବିସ୍ତାର ଲାଭ କରିଅଛି । କଳିହତ ଜୀବ ପକ୍ଷରେ ତାହା ପାଳନ କରିବା ଏବଂ ତାର ମର୍ମ ହୃଦୟଙ୍ଗମ କରିବା ଅତିଶୟ କଠିନ ହେବ । ସେଥିଲାଗି, ସେ କୃପା କରି ପୁନରାୟ ଯାବତୀୟ ଶାସ୍ତ୍ରତତ୍ତ୍ୱ ଚତୁଃ ଶ୍ଳୋକରେ ପ୍ରକାଶ କରି ଦେବର୍ଷି ନାରଦଙ୍କୁ ଏହି ଚତୁଃଶ୍ଳୋକୀ ଶ୍ରୀମଦ୍ ଭାଗବତ ଅଧ୍ୟୟନ କରାଇଲେ । ଦେବର୍ଷି ନାରଦ କୃପାକରି ପୁନରାୟ ସେହି ସବ ଶାସ୍ତ୍ର ସାର ଚତୁଃ-ଶ୍ଳୋକକୁ ସରଳ ଭାଷାରେ ଶତ ଶ୍ଳୋକରେ ବିବୃତ କରି ବ୍ୟାସଦେବଙ୍କୁ ଉପଦେଶ ଦେଲେ । ବ୍ୟାସଦେବ ନାରଦୋକ୍ତ ସେହି ଶତ ଶ୍ଳୋକରୁ ଅଷ୍ଟାଦଶ ସହସ୍ର ଶ୍ଳୋକାତ୍ମକ ଶ୍ରୀମଦ୍ ଭାଗବତ ଶ୍ରୀଗ୍ରନ୍ଥ ପ୍ରଣୟନ କରିଥିଲେ । ପୂଜ୍ୟପାଦ ଶ୍ରୀଲ କୃଷ୍ଣଦାସ କବିରାଜ ଗୋସ୍ୱାମୀ ସେହି ପରମ ଉପାଦେୟ ଗ୍ରନ୍ଥ-ରାଜ ଶ୍ରୀମଦ୍ ଭାଗବତ ମନ୍ଥନ କରି ଶ୍ରୀଶ୍ରୀ ଚୈତନ୍ୟ ଚରିତା-ମୃତ ପ୍ରଣୟନ କଲେ । ଅତଏବ, ସାଧନ କ୍ଷେତ୍ରରେ ସବ ଶାସ୍ତ୍ରର ସାର ଶ୍ରୀ ଚୈତନ୍ୟ ଚରିତାମୃତ ଗ୍ରନ୍ଥହିଁ ଏକମାତ୍ର ଆଶ୍ରୟ ଓ ସମ୍ବଳ, କିନ୍ତୁ ସବ ସାଧାରଣଙ୍କୁ ବୈଷ୍ଣବୀୟ ଉପାସନାତତ୍ତ୍ୱ ସଂକ୍ଷେପରେ ବୁଝାଇ ଦେବାଲାଗି ଶ୍ରୀ ନରୋତ୍ତମ ଦାସ ଠାକୁର ମହାଶୟଙ୍କର ପ୍ରାର୍ଥନା ଓ ପ୍ରେମ ଭକ୍ତି ଚନ୍ଦ୍ରିକା ଏହି ଶ୍ରୀଗ୍ରନ୍ଥ ଦ୍ୱୟର ଆବିର୍ଭାବ ହୋଇଅଛି । ଆମ୍ଭମାନଙ୍କପରି ଦୁର୍ବଳ, କ୍ଷୀଣଜୀବୀ, ଅନ୍ନଗତପ୍ରାଣ, ଅଳ୍ପାୟୁ ଏବଂ ବିଷୟ ବାସନା ମୁଗ୍ଧ କଳିଜୀବର ବିପୁଳ ଶାସ୍ତ୍ରଗ୍ରନ୍ଥ ପଢ଼ିବା ବା ଶୁଣିବା ଲାଗି ସମୟ କେଉଁଠି ବାବା—ଅତଏବ,

ଏବଂ ଶାସ୍ତ୍ରର ସାର ଶ୍ରୀଲ କବିରାଜ ଗୋସ୍ୱାମୀଙ୍କର ଶ୍ରୀ ଚୈତନ୍ୟ ଚରିତାମୃତ, ଠାକୁର ମହାଶୟଙ୍କର ପ୍ରାର୍ଥନା ଓ ପ୍ରେମ ଭକ୍ତି ଚନ୍ଦ୍ରିକା ପାଠ କରିବ ।

ଏହିପରି ଉପଦେଶ ଦେଇ ମହାପୁରୁଷ ମଧ୍ୟାହ୍ନକୃତ୍ୟ କରିବାକୁ ଗଲେ । ଅପରଶିଷ୍ୟ ଭିକ୍ଷାରେ ଯିବାକୁ ପ୍ରସ୍ତୁତ ହୁଅନ୍ତେ, ଗଇଚରଣବାବୁ ତାଙ୍କୁ କହିଲେ, "ଭାଇ ! ଅନୁମତି ପାଇଲେ ମୁଁ ମଧ୍ୟ ଆପଣଙ୍କ ସଙ୍ଗରେ ଯାଆନ୍ତି । ମୋର ବଡ଼ ଇଚ୍ଛା ହେଉଛି ।" ସେ ସସ୍ନେହରେ କହିଲେ,—"ନା ଭାଇ, ତୁମେ ଆଶ୍ରମରେ ରୁହ । ପ୍ରଖର ରୌଦ୍ରତାପରେ ତୁମକୁ କଷ୍ଟ ଲାଗିବ ।" ନବଶିଷ୍ୟଙ୍କର ହୃଦୟ ସେତେବେଳେ ନବାନୁରାଗରେ ପରିପୂର୍ଣ୍ଣ । ସେ କୌଣସି ବାଧା ମାନିଲେ ନାହିଁ । ଉଭୟେ ଏକ ସଙ୍ଗରେ ନାମ ସଙ୍କୀର୍ତ୍ତନ କରି କରି ଭିକ୍ଷାରେ ବାହାରି ପଡ଼ିଲେ ଏବଂ ପ୍ରୟୋଜନ ମତେ ଭିକ୍ଷା ସଂଗ୍ରହ ମାତ୍ରେ ସେମାନେ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କଲେ ।

ଆଶ୍ରମକୁ ଫେରି ଆସି ଉଭୟେ ଭୋଗର ଉଦ୍‌ଯୋଗ କରିବାକୁ ଲାଗିଲେ । ବେଳା ତୃତୀୟ ପ୍ରହର ସମୟରେ ଠାକୁରଙ୍କର ଭୋଗ ପ୍ରସ୍ତୁତ ହେଲା । ଗୁରୁଦେବ ଠାକୁରଙ୍କୁ ଭୋଗ ଦେଇ ପ୍ରସାଦ ଗ୍ରହଣ କଲେ, ଉଭୟ ଶିଷ୍ୟ ତାଙ୍କର ଅଧରାମୃତ ଗ୍ରହଣ କରି କୃତାର୍ଥ ହେଲେ । ପରେ ମହାପୁରୁଷଙ୍କର ଆଦେଶ କ୍ରମେ ଯଥାରୀତି ଗ୍ରନ୍ଥପାଠ ସାୟଂକାଳ ପର୍ଯ୍ୟନ୍ତ ହେଲା । ତାପରେ ଆରତି କୀର୍ତ୍ତନ ଓ ନାମ ସଙ୍କୀର୍ତ୍ତନ ରାତ୍ରି ପ୍ରାୟ ଏକପ୍ରହର ପର୍ଯ୍ୟନ୍ତ ଚାଲିଲା । ମହାପୁରୁଷ ମାଳା ଜପ କରିବାକୁ ବସିଲେ । ରାଇଚରଣବାବୁ ମାଳା ଜପ କଥା ପଚାରିବାରୁ ଗୁରୁଦେବ କହିଲେ, "ତୁମେ

ଶ୍ରୀ ନବଦ୍ୱୀପ ଧାମକୁ ଯାଅ, ଠିକ୍ ସମୟରେ ଶ୍ରୀମନ୍ ମହାପ୍ରଭୁ ତୁମକୁ ଜପ ପାଇଁ ମାଳା ଦେବେ ।" ଏହିପରି କଥୋପକଥନରେ ରାତ୍ରି ଶେଷ ହେଲା ।

# ଶ୍ରୀ ଶ୍ରୀ ଗୁରୁଦେବଙ୍କ ଆଜ୍ଞାରେ ତୀର୍ଥ ପର୍ଯ୍ୟଟନ

ବ୍ରାହ୍ମ ମୂହୂର୍ତ୍ତରେ ଗାତ୍ରୋତ୍ଥାନ କରି ଶ୍ରୀ ଗୁରୁଦେବ ତାଙ୍କର ନବଶିଷ୍ୟଙ୍କୁ ଆଦେଶ କଲେ, "ବାବା ସରଯୂ ନଦୀରେ ସ୍ନାନ କରି ଅଯୋଧ୍ୟାର ସକଳ ଶ୍ରୀ ବିଗ୍ରହାଦିଙ୍କୁ ଦର୍ଶନ କରି ଯେକୌଣସି ଠାକୁରମନ୍ଦିରରେ ମହାପ୍ରସାଦ ସେବନକରି କାଶୀ,ଗୟା, ପ୍ରୟାଗ, ମଥୁରା, ବୃନ୍ଦାବନ ପ୍ରଭୃତି ତୀର୍ଥ ପର୍ଯ୍ୟଟନ କରି ଶ୍ରୀଧାମ ନବଦ୍ୱୀପରେ ପହଞ୍ଚିବ । କିଛିଦିନ ସେଠାରେ ରହି ନୀଳାଚଳକୁ ଗମନ କରିବ । ସମ୍ପ୍ରତି ଆଉ ମୋ ସଙ୍ଗେ ଦେଖା ହେବନାହିଁ । ନିତାଇ ଗୌର ଏହି କାର୍ଯ୍ୟରେ ତୁମର ସହାୟ ହେବେ । ପ୍ରଭୁର ଇଚ୍ଛା ହେଲେ ପୁନର୍ବାର ମୋ ସଙ୍ଗରେ ଦେଖା ହେବ ।"

ନବଶିଷ୍ୟ କାନ୍ଦି କାନ୍ଦି ଶ୍ରୀ ଗୁରୁଦେବଙ୍କର ଶ୍ରୀ ଚରଣ ତଳେ ପ୍ରଣାମ କଲେ । ଗୁରୁଦେବ ଯଥୋଚିତ ଆଶୀର୍ବାଦ କରି ତାଙ୍କୁ ଆଲିଙ୍ଗନ ପୂର୍ବକ ଶକ୍ତି ସଞ୍ଚାର କରାଇ ଦେଲେ । ସେତେବେଳେ ଶିଷ୍ୟ ପ୍ରେମରେ ଉନ୍ମତ୍ତ ପ୍ରାୟ ଟଳି ଟଳି ଜ୍ୟେଷ୍ଠ ଗୁରୁ ଭାଇଙ୍କୁ ଦଣ୍ଡବତ ପ୍ରଣାମ କଲେ । ସେ ମଧ୍ୟ ପ୍ରସନ୍ନ ଚିତ୍ତରେ ପ୍ରେମାଲିଙ୍ଗନ ପୂର୍ବକ "ଗୁରୁ-ଆଜ୍ଞା ସର୍ବଥା ପାଳନୀୟ । ଏହି ବାକ୍ୟ କହି, ତାଙ୍କୁ ବିଦାୟ ଦେଲେ ।

ଶ୍ରୀ ଗୁରୁଦେବଙ୍କ ଆଦେଶରେ ରାଇଚରଣବାବୁ ଅଯୋଧ୍ୟାରେ ଠାକୁର ଦର୍ଶନ କରିସାରି ଓ ଠାକୁର ମନ୍ଦିରରେ ପ୍ରସାଦ ସେବନ କରି ତୀର୍ଥ ଭ୍ରମଣରେ ବାହାରି ପଡ଼ିଲେ । କିନ୍ତୁ ସର୍ବଦା ଯେପରି ଉନ୍ମତ୍ତ ପ୍ରାୟ ଭ୍ରମଣ କରିବାକୁ ଲାଗିଲେ । ତୀର୍ଥ ଦର୍ଶନ କରିବା କଥା—କରୁଛନ୍ତି, କେହି କିଛି ଆଗ୍ରହରେ ଖାଇବାକୁ ଦେଲେ ଖାଉଛନ୍ତି । କିନ୍ତୁ କଣ ଦେଖିଲେ ବା କଣ ଖାଇଲେ, ପ୍ରଶ୍ନ କଲେ କହି ପାରିବେ କି ନାହିଁ ସନ୍ଦେହ ! ଦୁଇ ନୟନ ସର୍ବଦା ପ୍ରେମରେ ଟଳ୍ ଟଳ୍ । ଅନୁରାଗରେ ରକ୍ତବର୍ଣ୍ଣ । ସୁନ୍ଦର ସଦାନନ୍ଦ ମୁଖ ମଣ୍ଡଳ ଦେଖିଲେ, ବୋଧହୁଏ ସେ ଯେପରି ଏ ରାଜ୍ୟରେ ନାହାନ୍ତି, କଥାବାର୍ତ୍ତା ସମସ୍ତ ଅସଂଲଗ୍ନ । ଶରୀର ପ୍ରତି ଭ୍ରୂକ୍ଷେପ ନାହିଁ କିମ୍ବା ମନର ଭାବ ପ୍ରକାଶ ମଧ୍ୟ ନାହିଁ । ଅନବରତ ପଥ ଚାଲିଛନ୍ତି । କିନ୍ତୁ ବାହ୍ୟଜ୍ଞାନ ରହିତ । ଏହିପରି ଭାବରେ ନାନା ତୀର୍ଥ ଭ୍ରମଣ କରି ଶ୍ରୀ ଶ୍ରୀ ବୃନ୍ଦାବନ ଧାମରେ ଆସି ପହଞ୍ଚିଲେ । ଏହି ପ୍ରେମ ଧାମରେ ପହଞ୍ଚିବା ପରେ ତାଙ୍କର ଚିତ୍ତର ସାମାନ୍ୟ ସ୍ଥିରତା ଆସିଲା । ଶ୍ରୀ ବୃନ୍ଦାବନରେ ସେ ସର୍ବ ପ୍ରଥମେ ଖଣ୍ଡିଏ ଶ୍ରୀ ଶ୍ରୀ ଚୈତନ୍ୟାମୃତ, ଖଣ୍ଡିଏ ମନଃଶିକ୍ଷା ଓ ଖଣ୍ଡିଏ ଭକ୍ତି ତତ୍ତ୍ୱସାର ସଂଗ୍ରହ କରି ପ୍ରତିଦିନ ଅନ୍ତତଃ କିଛିକ୍ଷଣ ଏହି ସକଳ ଗ୍ରନ୍ଥ ପାଠର ବ୍ୟବସ୍ଥା କଲେ । ଏହିପରି ଭାବରେ କିଛି ଦିନ ଗତ ହେବାପରେ ହଠାତ୍ ଦିନେ ଶ୍ରୀଧାମ ନବଦ୍ୱୀପ ସ୍ମରଣରେ ତାଙ୍କର ପ୍ରାଣ କାନ୍ଦି ଉଠିଲା । ସେ ଆଉ ଶ୍ରୀଧାମ ବୃନ୍ଦାବନରେ ରହି ପାରିଲେ ନାହିଁ, ଶ୍ରୀ ଶ୍ରୀ ନବଦ୍ୱୀପ ଚନ୍ଦ୍ର ତାଙ୍କୁ ଆକର୍ଷଣ କଲେ । ତତ୍କ୍ଷଣାତ୍ ସେ ଶ୍ରୀଧାମ ନବଦ୍ୱୀପ ଉଦ୍ଦେଶ୍ୟରେ ଯାତ୍ରା କଲେ । ଗୋଟିଏ ଗୋଟିଏ ଦିନ ତାଙ୍କ ପକ୍ଷରେ ଗୋଟିଏ ଗୋଟିଏ ଯୁଗପରି ବୋଧ ହେଲା । ଭଗବତ୍ ଆକର୍ଷଣର କି ଅଦ୍ଭୁତ ଶକ୍ତି !

ଅନୁରାଗର ଆଧିକ୍ୟରେ ସୁଦୂର ପଥ ମଧ୍ୟ ନିକଟ ହୁଏ । ଏହି କାରଣ ଯୋଗୁ ଯେପରି ଅତିଶୀଘ୍ର ରାଇଚରଣ ବାବୁ ଶ୍ରୀଧାମରେ ଆସି ପହଞ୍ଚି ଗଲେ ।

## ଶ୍ରୀଧାମ ନବଦ୍ୱୀପରେ ରାଜେନ୍ ବାବୁ

ଶ୍ରୀ ଶ୍ରୀ ଗୁରୁଦେବ ରାଇଚରଣବାବୁଙ୍କର ହୃଦୟରେ ଯେ କି ଭାବ ସଞ୍ଚାର କରାଇ ଥିଲେ, ଅନ୍ତରରେ ଯେ କି ସୁଧା ତାଙ୍କ ଦେଇଥିଲେ ତାହା ସେ ଜାଣନ୍ତି । ରାଇଚରଣବାବୁ ଶ୍ରୀଧାମ ନବଦ୍ୱୀପରେ ଉପସ୍ଥିତ ହୋଇ ଗଙ୍ଗା ସ୍ନାନ କଲେ । ଶ୍ରୀ ଗୌରାଙ୍ଗ ଲୀଳାସ୍ଥଳୀ ପୂଣ୍ୟତୋୟା ସୁରଧୂନୀ ଦର୍ଶନରେ ତାଙ୍କ ମନ ଭିତରେ ଆଜ ଭାବ ସମୁଦ୍ରର ଶତଶତ ତରଙ୍ଗ ଉଠୁଛି । ସେ ପ୍ରେମାନନ୍ଦରେ ବିଭୋର ହୋଇ ଗଙ୍ଗା କୂଳରେ ବସିଛନ୍ତି । ଏହିପରି ସମୟରେ ଶ୍ରୀ ଜଗଦାନନ୍ଦ ଦାସ ନାମକ ଏକ ମୂର୍ତ୍ତି ବାବାଜୀ ଆଗ୍ରହ ସହକାରେ ତାଙ୍କୁ ମଣିପୁର ରୋଡ଼ସ୍ଥିତ ନିଜ ଗୃହକୁ ନେଇଗଲେ ଏବଂ ଗୋଟିଏ ଶ୍ରେଷ୍ଠ ଘରେ ତାଙ୍କର ରହିବାର ବ୍ୟବସ୍ଥା କରିଦେଲେ ।

ରାଇଚରଣବାବୁ ଗୁରୁଦେବଙ୍କ କୃପା ବଳରେ ବର୍ତ୍ତମାନ ଅତିଶୟ ସ୍ଥିର ପ୍ରକୃତି ଓ ଗମ୍ଭୀର । ସେ କାହାରି ସହିତ କଥାବାର୍ତ୍ତା କରୁନାହାନ୍ତି । ତିନିଥର ଗଙ୍ଗାସ୍ନାନ କରୁଛନ୍ତି । ଏବଂ ବେଳା ତୃତୀୟ ପ୍ରହର ସମୟରେ ନିଜ ହସ୍ତରେ ଭବିଷ୍ୟାନ୍ନ ରନ୍ଧନ କରି ଠାକୁରଙ୍କୁ ଭୋଗ ଦେଇ ପ୍ରସାଦସେବନ କରୁଛନ୍ତି । ପ୍ରେମାନନ୍ଦରେ ବିଭୋର ହୋଇ ଦିବାରାତ୍ରି ନାମକୀର୍ତ୍ତନ କରୁଛନ୍ତି ।

ଶ୍ରୀ ଗୌରାଙ୍ଗ ସୁନ୍ଦରଙ୍କର ନିତ୍ୟ ଲୀଳାସ୍ଥଳୀ ଶ୍ରୀଧାମ ନବଦ୍ୱୀପର ନିତ୍ୟ ନବ ନବ ଶୋଭା ସନ୍ଦର୍ଶନରେ ଭାବାବେଶରେ କାନ୍ଦିକାନ୍ଦି ଆକୁଳ ହୋଇପଡ଼ୁଛନ୍ତି ।

ଜଗଦାନନ୍ଦ ଦାସ ବାବାଜୀ ମହାଶୟ ଦିନେ ପ୍ରଶ୍ନ କଲେ, "ବାବା ତୁମର ନାମ କ'ଣ ?" ଉତ୍ତରରେ ରାଇଚରଣବାବୁ ଯୋଡ଼ ହସ୍ତରେ କହିଲେ, "ଆଜ୍ଞା, ଆପଣଙ୍କର ଦାସାନୁଦାସ ରାଇଚରଣ ଦାସ ।" ଉଦାରଚେତା ବାବାଜୀ ମହାଶୟ ସାମାନ୍ୟ ଅନ୍ୟମନସ୍କ ଥିବାରୁ "ରାଇଚରଣ" ନ ଶୁଣି ରାଜେନ୍ ଶୁଣିଲେ । ସେହିଦିନ-ଠାରୁ ସେ ରାଇଚରଣବାବୁଙ୍କୁ ରାଜେନ୍‌ବାବୁ ବୋଲି ଡାକିବାକୁ ଲାଗିଲେ । ରାଇଚରଣବାବୁ ମଧ୍ୟ ଏଥିରେ କୌଣସି ଆପତ୍ତି କଲେ ନାହିଁ ।

ରାଇଚରଣବାବୁ ବର୍ତ୍ତମାନ ଶ୍ରୀଧାମ ନବଦ୍ୱୀପରେ ରାଜେନ୍-ବାବୁ ବୋଲି ପରିଚିତ । ଅବସ୍ଥାରେ ତାଙ୍କର ସମ୍ପୂର୍ଣ୍ଣ ପରିବର୍ତ୍ତନ ହୋଇଛି । ସେ ପ୍ରାୟ ବାହାରକୁ ବାହାରନ୍ତି ନାହିଁ । ପ୍ରସାଦ ଗ୍ରହଣ ପରେ ଥରେ ମାତ୍ର ଗଙ୍ଗାକୂଳକୁ ଯାଇ ମୁହଁ ହାତ ଧୋଇ ପୁନରାୟ ଗୃହ ପ୍ରବେଶ କରନ୍ତି । ତାଙ୍କର ବାସଗୃହ ଖଣ୍ଡି ଅତି ସାମାନ୍ୟ । ପ୍ରୟୋଜନୀୟ ଦ୍ରବ୍ୟ ଆଦି ମଧ୍ୟ ଅତି ଅଳ୍ପ । ଶ୍ରୀଗ୍ରନ୍ଥ ରୂପି ଭଗବାନ ତାଙ୍କର ଗୃହରେ ବିରାଜମାନ କରିଛନ୍ତି । ଶ୍ରୀଗ୍ରନ୍ଥ ସମ୍ମୁଖରେ ରଖି ଗଦ୍‌ଗଦ୍ କଣ୍ଠରେ ପାଠ କରୁଛନ୍ତି । ଅନୁରାଗ ଭରା ରକ୍ତବର୍ଣ୍ଣ ନୟନ ଯୁଗଳରୁ ପ୍ରେମ ଅଶ୍ରୁଧାରା ବିଗଳିତ ହେଉଛି । ଶ୍ରୀଗ୍ରନ୍ଥର ଗୋଟିଏ ଗୋଟିଏ ପଦ ପାଠ କରୁଛନ୍ତି ଆଉ ଅଶ୍ରୁ ଧାରାରେ ତାଙ୍କର ବକ୍ଷସ୍ଥଳ ଭାସି ଯାଉଛି । ସମସ୍ତ ଶରୀର ମଧ୍ୟରେ ଯେପରି

ପ୍ରେମର ତରଙ୍ଗରାଜ ବହିଯାଉଛି । ରାସ୍ତା କଡ଼ରେ ତାଙ୍କର ଘର । ରାସ୍ତାରେ ଚାଲି ଯାଉଥିବା ଲୋକମାନେ ଉଙ୍କି ମାରି କେତେ ଜଣ ଚାଲି ଯାଉଛନ୍ତି । କେହି କେହି କହୁଛନ୍ତି— "ଆହା—ଦେହଟି ଯେପରି ଖାଲି ପ୍ରେମରେ ଗଢ଼ା ! କଣ୍ଠସ୍ୱର କି ମଧୁର !! କି ସୁନ୍ଦର ରୂପ !!! ମନେ ହେଉଛି କୌଣସି ଧନୀ ବ୍ୟକ୍ତିର ପୁତ୍ର, ଗୃହ ବିବାଦ ଯୋଗୁ ଚାଲିଆସି ଏଠାରେ ରହିଛି । କେହି କେହି କହୁଛନ୍ତି—"ବୋଧହୁଏ ସ୍ତ୍ରୀର ମୃତ୍ୟୁପରେ ଏପରି ବୈରାଗ୍ୟ ଆସିଛି ।"' ଏହିପରି ତାଙ୍କର ବର୍ତ୍ତମାନ ଅବସ୍ଥାକୁ ଲକ୍ଷ୍ୟକରି କିଏ କେତେ ଭାବରେ ସମାଲୋଚନା କରି ଚାଲିଛନ୍ତି । କିନ୍ତୁ ସେ ପ୍ରେମାନନ୍ଦରେ ବିଭୋର । କୌଣସି ଆଡ଼କୁ ତାଙ୍କର ଲକ୍ଷ୍ୟନାହିଁ । ଏହିପରି ଭାବରେ ଦିନଦିନ ବିତିଗଲା । ତାଙ୍କର ବିଚିତ୍ର ସ୍ୱଭାବ—ମୁଖ ମଣ୍ଡଳକୁ ଚାହିଁଲେ ବୋଧହୁଏ ଯେପରି ସର୍ବଦା ଭାବନାଗ୍ରସ୍ତ ଓ ଯେପରି ପ୍ରାଣର ଜିନିଷଟିକୁ ହରାଇ ଖୋଜିବାରେ ଲାଗିଛନ୍ତି । ଚକ୍ଷୁ ଦୁଇଟି ପ୍ରେମରେ ଢଳ୍ ଢଳ୍— ଈଷତ୍ ରକ୍ତବର୍ଣ୍ଣ । ଥରେ ଥରେ କଣ ଯେପରି ପ୍ରକାଶ କରିବାକୁ ଚାହୁଁଛନ୍ତି କିନ୍ତୁ ଅନ୍ତରର ଭାବ ଅନ୍ତର ମଧ୍ୟରେ ରହିଯାଉଛି । ଏହିପରି ଅକଥନ ବ୍ୟାଧିଗ୍ରସ୍ତ ହୋଇ ନବଦ୍ୱୀପରେ ବାସ କରିବାକୁ ଲାଗିଲେ ।

# ନବଦ୍ୱୀପବାବୁଙ୍କ ସହିତ ମିଳନ

ଏହିପରି କିଛିଦିନ କଟିଗଲା । ରାଜେନ୍ଦ୍ରବାବୁଙ୍କ ରହୁଥିବା ଘରକୁ ଲାଗି ଆଉ ଗୋଟିଏ ଘରେ ଜଣେ ଯୁବକ ସସ୍ତ୍ରୀକ ଶ୍ରୀଧାମ ନବଦ୍ୱୀପ ଦର୍ଶନରେ ଆସି ରହୁଥିଲେ । ଏହି ନବାଗତ ଯୁବକଙ୍କର ନାମ ଶ୍ରୀ ନବଦ୍ୱୀପ ଦାସ । ଶ୍ରୀଧାମ ଆସିବାର ଦୁଇ

ଦିନକିଦନ ପରେ ଜଣେ ବୈଷ୍ଣବୀ ନବଦ୍ୱୀପବାବୁଙ୍କୁ ଗୋଟିଏ ସୁସମାଚାର ଦେଲେ ଓ କହିଲେ, "ବାବା, ପାଖ ଘରେ ଜଣେ ବାବୁ ରହୁଛନ୍ତି, କାହା ସହିତ କଥାବାର୍ତ୍ତା କରୁ ନାହାନ୍ତି କି କାହାର ଘରକୁ ଯାଉ ନାହାନ୍ତି, ସର୍ବଦା ଗ୍ରନ୍ଥ ପାଠରେ ବ୍ୟସ୍ତ । ତୁମେ ଯଦି ତାଙ୍କୁ ଦେଖିବାକୁ ଇଚ୍ଛାକର, ତାହେଲେ ଚାଲ ।" ନବଦ୍ୱୀପ ଦାସ ଭକ୍ତିମାନ ନବୀନ ଯୁବକ ଓ ଅନୁରାଗୀ ଭକ୍ତ ସେ ଏହା ଶୁଣି ଅତି ଉତ୍ସାହର ସହିତ କହିଲେ, "ମା, ଅନୁଗ୍ରହ କରି ମୋତେ ତାଙ୍କ ନିକଟକୁ ନେଇ ଚାଲନ୍ତୁ ।" ମାତାଜୀ ତତ୍କ୍ଷଣାତ୍ ଆନନ୍ଦିତା ହୋଇ ନବଦ୍ୱୀପଙ୍କୁ ସଙ୍ଗରେ ନେଇ ରାଜେନ୍‌ବାବୁଙ୍କ ନିକଟରେ ପହଞ୍ଚାଇ ଦେଲେ ।

ନବଦ୍ୱୀପ ଦାସ ସେଠାରେ ପହଞ୍ଚିବା ମାତ୍ରେ ଆନନ୍ଦରେ ବିହ୍ୱଳ । ନବାନୁରାଗର ଜ୍ୱଳନ୍ତ ଚିତ୍ର ସେହି ମହାପୁରୁଷଙ୍କୁ ଦେଖିବା ମାତ୍ରେ ପରସ୍ପରଚିତ୍ତ ବନ୍ଧି, ପରି ଦୁଇଜଣ ପ୍ରେମାନନ୍ଦରେ ଆତ୍ମହରା ହୋଇ କାନ୍ଦିବାକୁ ଲାଗିଲେ । ଉଭୟଙ୍କର ନୟନ ଯୁଗଳରେ ପ୍ରେମାଶ୍ରୁର ଉତ୍ସ । ଗାଢ଼ ପ୍ରେମାଲିଙ୍ଗନରେ ଉଭୟେ ଆବଦ୍ଧ । ପ୍ରେମାନନ୍ଦରେ ପାଗଳ ହୋଇ ଭୂମିରେ ଗଡି ଯାଉଛନ୍ତି ଆଉ "ଜୟ ନିତାଇ" କହି ଉଦଣ୍ଡ ନୃତ୍ୟ କରୁଛନ୍ତି । ପରମ ଗମ୍ଭୀର ରାଜେନ୍‌ବାବୁ ଆଜି ଚପଳ-ଚୂଡ଼ାମଣି । ଗୃହ ମଧ୍ୟରେ ସେ ଆଜି କିପରି ପ୍ରେମ ବିହ୍ୱଳିତ ହୋଇ ପ୍ରେମାନନ୍ଦରେ ମଗ୍ନ, କିପରି ଦେହାନୁସନ୍ଧାନ ଶୂନ୍ୟ, ତାହା ନବଦ୍ୱୀପବାବୁଙ୍କ ଭିନ୍ନ ଅନ୍ୟ କେହି ଜାଣି ପାରିବେ ନାହିଁ । କିଛିକ୍ଷଣ ପରେ କରତାଳି ଦେଇ ଉଭୟେ କୀର୍ତ୍ତନ କରି କରି ରାସ୍ତା ଉପରକୁ ବାହାରି ପଡ଼ିଲେ—

"ଭଜ ଗୌରାଙ୍ଗ, କହ ଗୌରାଙ୍ଗ, ଲହ ଗୌରାଙ୍ଗେର ନାମରେ ।
ଯେ ଜନ ଗୌରାଙ୍ଗ ଭଜେ, ସେଇ ଆମାର ପ୍ରାଣରେ ॥"

ଏହି ପଦକ କୀର୍ତ୍ତନ କରି ନାଚି ନାଚି ଉଭୟେ ଶ୍ରୀ ଶ୍ରୀ ମହାପ୍ରଭୁଙ୍କ ଦର୍ଶନରେ ଚାଲିଲେ । ବେଳା ଦୁଇ ପ୍ରହର ଅତୀତ ହେଲାପରେ ସେମାନେ ପରିକ୍ରମା କରି ପରିଶ୍ରାନ୍ତ ଭାବରେ ଧୂଳି ଧୂସରିତ ଶରୀରରେ ଗୃହକୁ ଫେରି ଆସିଲେ । ସ୍ନାନ ପରେ ରାଜେନ୍-ବାବୁ ନିଜ ହସ୍ତରେ ରନ୍ଧନ କରି ଠାକୁରଙ୍କୁ ଭୋଗ ଦେଇ ପ୍ରସାଦ ପାଇଲେ ଓ ନବଦ୍ୱୀପବାବୁଙ୍କୁ ପ୍ରସାଦ ଦେଲେ । ତାପରେ ଦୁଇଜଣ ଗ୍ରନ୍ଥ ପାଠରେ ବସି ପଡ଼ିଲେ । ପାଠ ଆରମ୍ଭ ମାତ୍ରେ ଉଭୟଙ୍କର ହୃଦୟରେ ପ୍ରେମର ତରଙ୍ଗ ଛୁଟିଲା । ଶ୍ରୀ ଶ୍ରୀ ଚୈତନ୍ୟ ଚରିତାମୃତର ଗୋଟିଏ ଗୋଟିଏ ପୟାର ପାଠ ସମୟରେ ପ୍ରେମାନନ୍ଦରେ କ'ଣ ଦେଖିବ ସେ କାନ୍ଦ ଆଉ କ'ଣ ଦେଖିବ ସେ ହସର ଜୁଆର । ଗୃହ ମଧ୍ୟରେ ଖାଲି ହସ ଓ କାନ୍ଦର ପ୍ରବାହ ଛୁଟିଲା । ଉଭୟଙ୍କର ଏକ ପ୍ରାଣ ; ଭିନ୍ନ ଭିନ୍ନ ଦେହ ମାତ୍ର । କି ଅପୂର୍ବ ମିଳନ ! କି ଶୁଭ ଦର୍ଶନ । ଗୋଟିଏ ମାତ୍ର ଦିନର ପରିଚୟରେ ଉଭୟେ ଉଭୟଙ୍କର ଚିର ଦିନର ବନ୍ଧୁ ପ୍ରାୟ ହୋଇଗଲେ ।

ଦିନେ ରାତ୍ରରେ ନବଦ୍ୱୀପବାବୁ ନିଜ ସ୍ତ୍ରୀଙ୍କୁ କହିଲେ, "ତୁମେ ଦେଶକୁ ଚାଲିଯାଅ, ମୁଁ ଆଉ ଘରକୁ ଯିବି ନାହିଁ ।" ତାଙ୍କଠାରୁ ହଠାତ୍ ଏପରି କଥା ଶୁଣି ଚକାଇ ତାଙ୍କ ସ୍ତ୍ରୀ କହିଲେ, "ଏତେ ବଡ଼ ଚାକିରି ପାଇଛ, ଚାକିରିରେ ଏତେ ସମ୍ମାନ ; କାହାରିକୁ କିଛି କୁହାକୁହି କରିନାହିଁ, ହଠାତ୍ ଏପରି କ'ଣ କହୁଛ ?" ସମସ୍ତେ ନବଦ୍ୱୀପବାବୁଙ୍କୁ ବିଶେଷ ଅନୁରୋଧ କରିବାରୁ ସେ ସମ୍ପୂର୍ଣ୍ଣ ଅନିଚ୍ଛା ସତ୍ତ୍ୱେ ଅଗତ୍ୟା ରାଜେନ୍‌ବାବୁଙ୍କ ନିକଟରୁ ଏକ ସପ୍ତାହ ଲାଗି ବିଦାୟ ନେଇ ଦେଶକୁ ଗଲେ । ତାଙ୍କର ମନ ପ୍ରାଣ ସବୁ ଲାଗି ରହିଲା ରାଜେନ୍‌ବାବୁଙ୍କ ନିକଟରେ । ବିଦାୟ

କାଳୀନ କରୁଣ ଦୃଶ୍ୟ କେହି ଦେଖିଲେ ନାହିଁ । ନବଦ୍ୱୀପବାବୁ ଏଇ ବିଷମ କାର୍ଯ୍ୟଟିକୁ ଗୋପନରେ ସମାହିତ କଲେ ।

# ଶ୍ରୀ ଶ୍ରୀ ମହାପ୍ରଭୁ ଦର୍ଶନ ଓ କୀର୍ତ୍ତନ-ଶ୍ରବଣ

ନବଦ୍ୱୀପ ବାବୁଙ୍କୁ ବିଦାୟ ଦେବାପରେ ରାଜେନ୍ ବାବୁଙ୍କର ମୁଖ କାନ୍ତି ମ୍ଳାନ-ଅନ୍ତରରେ ବିଷମ ଦୁଃଖ । ସତେ ଯେପରି ଗୋଟିଏ ମୂଲ୍ୟବାନ୍ ବସ୍ତୁ ହରାଇଛନ୍ତି । ଦିନେ ଗଲା, ଦୁଇଦିନ ଗଲା, ତୃତୀୟ ଦିନ ସେ ଜାମା, ଜୋତା ପିନ୍ଧି ଶ୍ରୀ ଶ୍ରୀ ମହାପ୍ରଭୁଙ୍କ ଦର୍ଶନରେ ଚାଲିଲେ । ଶ୍ରୀମନ୍ ମହାପ୍ରଭୁଙ୍କର ଗୃହରେ କୀର୍ତ୍ତନ ଚାଲିଛି । ରାଜେନ୍‌ବାବୁ କୀର୍ତ୍ତନ ଶୁଣିବାକୁ ବସି ପଡ଼ୁଛନ୍ତି, ପୁଣି ଉଠିପଡ଼ି ଯେଉଁଠାରେ ଜୋତା ରଖିଥାନ୍ତି, ସେ ସ୍ଥାନକୁ ଚାଲି ଆସୁଥାଆନ୍ତି । ଏଇପରି ଦୁଇଥର କରିବା ପରେ ତାଙ୍କର ଆଉ ଧୈର୍ଯ୍ୟ ରହିଲା ନାହିଁ । ସମ୍ମୁଖରେ ଜଣେ ଯୁବକଙ୍କୁ ଦେଖି କହିଲେ, "ଭାଇ ! ଏଇ ଜୋତା ହଳଟିକୁ ତୁମେ ପିନ୍ଧ ।" ଯୁବକଟି ଏଇ କଥା ଶୁଣି ବିସ୍ମିତ ହୋଇ କହିଲେ, "ଏ କ'ଣ କହୁଛନ୍ତି ! ମୁଁ ଆପଣଙ୍କର ଜୋତା କାହିଁକି ପିନ୍ଧିବି ?" ବାରମ୍ବାର ଅନୁରୋଧ କରିବାରୁ ଯୁବକ ଅଗତ୍ୟା ଜୋତା ହଳକୁ ପିନ୍ଧିଲେ । ସେତେବେଳେ ରାଜେନ୍‌ବାବୁ ଆଗ୍ରହ ସହକାରେ ନିଜ ଦେହରୁ ସୁନା ବୋତାମ ଲାଗିଥିବା ଜାମା ଖଣ୍ଡିକ ଖୋଲି ତାଙ୍କୁ ପିନ୍ଧାଇ ଦେଇ କହିଲେ, "ଉଃ, କି ଶାନ୍ତି ପାଇଲି ! ହେ ପ୍ରଭୁ ! ବିଷୟୀ ବିଷ କ'ଣ ଏତେ ତୀବ୍ର ? ଏତେ ଯନ୍ତ୍ରଣା ପ୍ରଦ ? ଏତେକ୍ଷଣ ଏଇ ଜୋତା, ଜାମା ରୂପ ବିଷୟ ବିଷରେ କି କଷ୍ଟ ପାଉଥିଲି । ପ୍ରଭୁ !

ତୁମେ ମୋର ଏ ଜ୍ୱାଳା ନିବାରଣ କର । ଧନ୍ୟ ତୁମର କରୁଣା ।”
ଏଇପରି କହି ଅତି ପ୍ରଫୁଲ୍ଲ ମନରେ, ନିଶ୍ଚିନ୍ତ ଭାବରେ ପୁଣି
କୀର୍ତ୍ତନ ଶୁଣିବାକୁ ବସି ପଡ଼ିଲେ । କୀର୍ତ୍ତନ ଶେଷ ହେଲା ପରେ ସେ
ଖାଲି ଦେହ ଓ ଖାଲି ପାଦରେ ଘରକୁ ଫେରିଲେ । ଆଜି ତାଙ୍କ
ମନରେ ବଡ଼ ଆନନ୍ଦ ! ପ୍ରଫୁଲ୍ଲ ମନରେ ସ୍ନାନାଦି ସମାପନ କରି
ଠାକୁରଙ୍କୁ ଭୋଗ ଦେଇ ପ୍ରସାଦ ପାଇଲେ । ତାପରେ ଯଥାରୀତି
ଗ୍ରନ୍ଥ ପାଠ କରିବାକୁ ବସିଲେ ।

ଏଣେ ନବଦ୍ୱୀପବାବୁ ତାଙ୍କ ଗୃହକର୍ତ୍ତାରୁ ଇସ୍ତଫା ଦେଇ
ପୂର୍ବ ପ୍ରତିଜ୍ଞା ପାଳନକରି ଠିକ୍ ସପ୍ତମ ଦିବସରେ ନବଦ୍ୱୀପରେ
ଆସି ରାଜେନ୍ଦ୍ରବାବୁଙ୍କ ସହିତ ସାକ୍ଷାତ୍ କଲେ । ରାଜେନ୍ଦ୍ରବାବୁ
ତାଙ୍କର ହଜିଯାଇଥିବା ରତ୍ନଟିକୁ ପାଇ ଆନନ୍ଦରେ କାନ୍ଦି ଉଠିଲେ ।
ଉଭୟଙ୍କ ମନରେ ପୁଣି ପୂର୍ବବତ୍ ଆନନ୍ଦର ସ୍ରୋତ ବହିବାକୁ
ଲାଗିଲା । ଦୁଇ ତିନିଦିନ ପରେ ଆଉ ଦୁଇଜଣ ଅନୁରାଗୀ ଯୁବକ
ଆସି ସେମାନଙ୍କ ସହିତ ଯୋଗଦେଲେ । ଜଣେ ଗୌରବର୍ଣ୍ଣ—
ତାଙ୍କର ନାମ **କୃଷ୍ଣଗୋବିନ୍ଦ**, ଅପର ଜଣକ କୃଷ୍ଣକାୟ,
ନାମ—**ରାସମୋହନ** ।

ରାଜେନ୍ଦ୍ରବାବୁ ଅତି ବନ୍ଧୁପ୍ରିୟ । ମଧୁମୟ ଭାତୃଭାବଟି
ଯେପରି ତାଙ୍କର ସହଜାତ । ଯେଉଁଠାରେ, ଯେଉଁଭାବରେ ଯାହା
ସଙ୍ଗେ ମିଳନ ହୁଏ, ତାଙ୍କୁ ‘ଦାଦା’ ବା ଭାଇ ସମ୍ବୋଧନ କରିବା
ତାଙ୍କର ସ୍ୱଭାବସିଦ୍ଧ ଭାବ । ରାଜେନ୍ଦ୍ରବାବୁଙ୍କୁ ଗୁରୁଜ୍ଞାନରେ ଦର୍ଶନ
କରି ମଧ୍ୟ କେହି ତାଙ୍କ ସହିତ ‘ଦାଦା’ଭିନ୍ନ ଅନ୍ୟ ସମ୍ବନ୍ଧ ସ୍ଥାପନ
କରିପାରି ନାହାନ୍ତି । ନବଦ୍ୱୀପବାବୁ, ନବାଗତ ଅନୁରାଗୀ ଯୁବକ
ଦୁଇଜଣଙ୍କର ସେ ‘ଦାଦା’ ହେଲେ । ‘ଦାଦା’ ସମ୍ବୋଧନରେ

ସେ ଯେତେ ସୁଖ ପାଉଥିଲେ ଆଉ ଅନ୍ୟ କୌଣସି ସମ୍ଭାଷଣରେ ସେ ସେତେ ସୁଖ ପାଉ ନଥିଲେ ।

ଏବେ ପ୍ରାତଃକାଳରେ ସମସ୍ତେ ମିଳି ଗୋଟିଏ ନୂତନ ସଙ୍କୀର୍ତ୍ତନ ଗାଇ ଗାଇ ଠାକୁରଙ୍କ ଦର୍ଶନରେ ବାହାରି ପଡ଼ିଲେ । ଗୀତଟି ରାଜେନ୍‌ବାବୁଙ୍କର ସ୍ୱରଚିତ । ନବଦ୍ୱୀପ ପଥ ଲୋକାରଣ୍ୟ । ସମସ୍ତେ ଭାବରେ ବିଭୋର । ରାଜେନ୍‌ବାବୁ ବାହ୍ୟଜ୍ଞାନ ଶୂନ୍ୟ । ନବଦ୍ୱୀପରେ ଆଜି ବହୁଦିନପରେ, ଅପୂର୍ବ ପ୍ରେମାନନ୍ଦର ବନ୍ୟା ଛୁଟିଛି । ଯଦି ବା ମୃଦଙ୍ଗାଦି କୌଣସି ଯନ୍ତ୍ରର ସାହାଯ୍ୟ ନାହିଁ, ତଥାପି ବ୍ରହ୍ମାଣ୍ଡ ଭେଦି ନାମବ୍ରହ୍ମ ଯେପରି ମୂର୍ତ୍ତିମାନରୂପେ ପ୍ରତୀୟମାନ ହେଉଛି । ନାମର ମଧୁର ଧ୍ୱନିରେ ଦଶଦିଗ ମୁଖରିତ । ପଥର ଉଭୟ ପାର୍ଶ୍ୱରେ ଆବାଳ-ବୃଦ୍ଧବନିତା ସମସ୍ତେ ଶିହ ପୁଲକିତ ପ୍ରାୟ କୀର୍ତ୍ତନ ଶୁଣୁଛନ୍ତି ଆଉ ଆଶ୍ଚର୍ଯ୍ୟ ହୋଇ ପରସ୍ପର ମଧ୍ୟରେ କୁହାକୋହି ହେଉଛନ୍ତି, "ଆହା ! ଏ ଭକ୍ତଟି କିଏ ? ଗତିବିଧି ଭାବଭଙ୍ଗୀ ସମସ୍ତ ଯେପରି ଅପୂର୍ବ ମଧୁମୟ । ଯଦିଓ ଇଏ ଉଜ୍ଜ୍ୱଳ ଗୌରବର୍ଣ୍ଣ ନୁହଁନ୍ତି, କିନ୍ତୁ ମୁଖମଣ୍ଡଳ କି ସୁନ୍ଦର ! କି ମାଧୁର୍ଯ୍ୟମୟ ! ଯାହାର ଦୃଷ୍ଟି ଏହାଙ୍କର ମୁଖମଣ୍ଡଳରେ ଥରେ ପଡ଼ୁଛି ସେ ଯେପରି ମନ୍ତ୍ରମୁଗ୍ଧ ହୋଇ ଚିରଦିନ ଲାଗି ଏହାଙ୍କର ଚରଣ ତଳେ ନିଜ ମନପ୍ରାଣ ଢାଳି ଦେଇଛି । ଧନ୍ୟ ଏହାଙ୍କର ଜନ୍ମ ! ଧନ୍ୟ ଏହାଙ୍କର ପ୍ରେମଭକ୍ତି ! ବାସ୍ତବିକ ଇଏ ଜଣେ ମହାପୁରୁଷ ।"

## ଶ୍ରୀ ଶ୍ରୀ ନୀଳାଚଳ ଯାତ୍ରା

ନବଦ୍ୱୀପରେ ଏହିପରି କୀର୍ତ୍ତନ ଆନନ୍ଦରେ କିଛିଦିନ କଟାଇ ରାଜେନ୍‌ବାବୁ ନିଜର ସଙ୍ଗୀମାନଙ୍କୁ ସାଥିରେ ନେଇ କୀର୍ତ୍ତନ କରି

କରି ଗଙ୍ଗାନଦୀ କୂଳେ କୂଳେ ଦକ୍ଷିଣାଭିମୁଖୀ ହୋଇ ଚାଲିଲେ ।
କେଉଁଆଡ଼େ ଯାଉଛନ୍ତି, କିଏ ଜାଣେ ? ନବଦ୍ୱୀପ ଦାସ ପ୍ରଭୃତି
ତିନିଜଣ ଦାଦାଙ୍କର ମୁଖାପେକ୍ଷୀ, ପ୍ରେମାନନ୍ଦ ଦାଦା ତାଳେ
ତାଳେ ନାଚି ନାଚି ଚାଲିଛନ୍ତି । ମନ୍ତ୍ରମୁଗ୍ଧ ହୋଇ ଅନ୍ୟମାନେ
ତାଙ୍କର ଅନୁସରଣ କରୁଛନ୍ତି । ଅବିରାମ କୀର୍ତ୍ତନ ଚାଲିଛି । ନାମ-
ସୁଧାର ମଧୁର ଧ୍ୱନି ଗଗନ ଭେଦ କରି ଉଠିଛି । ଗ୍ରାମବାସୀ
ଆବାଳବୃଦ୍ଧବନିତା ଏଇ ସଦାନନ୍ଦ ପ୍ରେମମୟ ମୂର୍ତ୍ତି ଦର୍ଶନ କରି
ବିମୋହିତ ହୋଇ ପଡ଼ୁଛନ୍ତି । ଶାନ୍ତିପୁରର ଶ୍ରୀପାଦ କୁଞ୍ଜଲାଲ
ଗୋସ୍ୱାମୀ ମହାଶୟ ଆସି ଏମାନଙ୍କ ସହିତ ମିଳିତ ହେଲେ । ଏହି
ସମୟରେ ଶିଷ୍ୟଗଣଙ୍କ ସହ ଶ୍ରୀପାଦ ବିପିନ୍ ବିହାରି ଗୋସ୍ୱାମୀ
ଆସି ଅତି ଆଗ୍ରହ ସହକାରେ ଏମାନଙ୍କୁ ତାଙ୍କର ଶ୍ରୀଶ୍ରୀ ମଦନ
ଗୋପାଳଜୀଉ ମନ୍ଦିରକୁ ନେଇଗଲେ । ସେଠାରେ ବହୁ ସମୟ
କୀର୍ତ୍ତନ ହେବାପରେ ଗଙ୍ଗାସ୍ନାନ ଓ ନିତ୍ୟକର୍ମ ସମାପନ କରି
ସମସ୍ତେ ଶ୍ରୀଶ୍ରୀ ମଦନଗୋପାଳଙ୍କର ମହାପ୍ରସାଦ ସେବନ କଲେ ।
ଏହିପରି ସେହି ସ୍ଥାନରେ କେତେଦିନ କୀର୍ତ୍ତନରେ ଗ୍ରାମବାସୀଙ୍କର
ଚିତ୍ତ ବିମୁଗ୍ଧ କରି ରାଜେନ୍ ବାବୁ ତାଙ୍କର ସାଙ୍ଗମାନଙ୍କ ସହିତ
ଶ୍ରୀପାଟ୍ କାଲ୍ନା ଦର୍ଶନରେ ବାହାରିଲେ । ଶ୍ରୀ ପାଟ୍କାଲ୍ନାର
ଶ୍ରୀଶ୍ରୀ ଗୌରାଙ୍ଗଙ୍କର ଯୁଗଳ ମୂର୍ତ୍ତି ଅତ୍ୟନ୍ତ ଚିତ୍ତାକର୍ଷକ ଓ ସର୍ବଜନ
ମନୋହାରୀ । ରାଜେନ୍ବାବୁ ଶ୍ରୀମୂର୍ତ୍ତି ଦ୍ୱୟଙ୍କୁ ଦର୍ଶନ ମାତ୍ରେ
ପ୍ରେମାନନ୍ଦରେ ବିଭୋର ହୋଇ ବାଳକ ପ୍ରାୟ ଉଚ୍ଚ ସ୍ୱରରେ
କାନ୍ଦିବାକୁ ଲାଗିଲେ । ନୟନ ଯୁଗଳରେ ଯେପରି ପ୍ରେମ ନଦୀର
ବନ୍ୟା ପ୍ରବାହିତ ହେଉଛି । ତାଙ୍କର ସଙ୍ଗୀଗଣ ମଧ୍ୟ ପ୍ରେମୋନ୍ମତ୍ତ
ହୋଇ କାନ୍ଦୁଛନ୍ତି । ଏହି ଅପୂର୍ବ ଦୃଶ୍ୟ ଦେଖି ସମସ୍ତେ ପରମା-
ନନ୍ଦିତ ହେଲେ । ରାଜେନ୍ ବାବୁ କିଛିକ୍ଷଣ ପରେ ସାମାନ୍ୟ

ପ୍ରକୃତସ୍ଥ ହୋଇ ଗଦ୍ ଗଦ୍ କଣ୍ଠରେ ନିଜର ପଦାବଳୀ କୀର୍ତ୍ତନ କରିବାକୁ ଆରମ୍ଭ କଲେ । କୀର୍ତ୍ତନ ଶୁଣି ସମସ୍ତେ ପ୍ରେମରେ ବିଭୋର । ରାଜେନ୍‌ବାବୁ ଓ ତାଙ୍କର ପ୍ରେମିକ ସାଙ୍ଗଗଣ ନିତାଇ ଗୌରାଙ୍ଗଙ୍କର ଚନ୍ଦ୍ର ବଦନକୁ ଚାହିଁ କାନ୍ଦି କାନ୍ଦି ଆତ୍ମହରା ହୋଇ ଉଦ୍ଦଣ୍ଡ ନୃତ୍ୟ କରୁଛନ୍ତି, ଏହିପରି ସମୟରେ ହଠାତ୍ ଗ୍ରାମର ଗୋଟିଏ ଚାରି ପାଞ୍ଚ ବର୍ଷ ବୟସର ବାଳକ କୀର୍ତ୍ତନ ଭିତରକୁ ଆସି ନାଚି ନାଚି ମୂର୍ଚ୍ଛା ହୋଇ ଭୂମିରେ ପଡ଼ିଗଲା । କେତେକ୍ଷଣ ପରେ ସେହି ପ୍ରେମାବିଷ୍ଟ ବାଳକ ରାଜେନ୍ ବାବୁ ଓ ତାଙ୍କର ସଙ୍ଗୀଗଣଙ୍କୁ ଲକ୍ଷ୍ୟ କରି କହିବାକୁ ଲାଗିଲା, "ତୁମ୍ଭେମାନେ ଆଉ କାଳ ବିଳମ୍ବ ନକରି ନୀଳାଚଳ ଅଭିମୁଖରେ ଯାତ୍ରା କର ।" ବାଳକଟିର କଥା ଶୁଣି ସମସ୍ତେ ଅତିଶୟ ଆଶ୍ଚର୍ଯ୍ୟାନ୍ୱିତ ହୋଇପଡ଼ିଲେ । ପରଦିନ ଚାରିଜଣ ପଦ ବ୍ରଜରେ ସଂକୀର୍ତ୍ତନ କରି କରି ନୀଳାଚଳ ଯାତ୍ରା କଲେ । ଯେଉଁଠାରେ ସନ୍ଧ୍ୟା ହୁଏ, ସେହିଠାରେ ହିଁ ରାତ୍ରିବାସ । ଯେଉଁଠାରେ ଦାଦାଙ୍କର ବିଶ୍ରାମର ଇଚ୍ଛା ହୁଏ, ସେଇ ସ୍ଥାନରେ ସମସ୍ତଙ୍କର ବିଶ୍ରାମ । ଗାଁ କ'ଣ, ବଣ କ'ଣ, ତାର କିଛି ବିଚାର ନାହିଁ । ଆହାରାଦିର ବ୍ୟବସ୍ଥା ମଧ୍ୟ ଅନୁରୂପ ।

କିଛିଦିନପରେ ସେମାନେ ଶ୍ରୀ ଶ୍ରୀ ସାକ୍ଷୀଗୋପାଳରେ ପହଞ୍ଚିଲେ । ରାଜେନ୍‌ବାବୁ କୀର୍ତ୍ତନ ଆରମ୍ଭ କଲେ । ଶ୍ରୀମନ୍ଦିର ସମ୍ମୁଖ ଲୋକାରଣ୍ୟ । ଏପରି କୀର୍ତ୍ତନ କେହି କେବେ ଶୁଣିନାହିଁ ବୋଲି ଜନମତ ପ୍ରକାଶ ପାଇଲା । ଦଳ ମଧ୍ୟରେ ଦୀର୍ଘକାୟ ବାବାଜୀ ଜଣଙ୍କୁ ଦେଖିଲେ ବାସ୍ତବିକ୍ ମହାପୁରୁଷ ବୋଲି ବୋଧହୁଏ । ଆଜାନୁଲମ୍ବିତ ବାହୁ, ସୁବଳିତ ଦେହ, ସୁନ୍ଦର ସହାସ୍ୟ ବଦନ ! ଦେଖିଲେ ମନେହୁଏ ଯେପରି ଇଏ ଏ ରାଜ୍ୟର

ଲୋକ ନୁହଁନ୍ତି । ରାଜେନ୍‌ବାବୁଙ୍କର ଏହି ସ୍ଥାନରୁ 'ବଡ଼ ବାବାଜୀ' ନାମ ପ୍ରଚଳିତ ହେଲା ।

କୀର୍ତ୍ତନ ଶେଷ ହେବା ପରେ ମହାପ୍ରସାଦ ଆସି ପହଁଞ୍ଚିଲା । ମହାମହୋତ୍ସବ ବ୍ୟାପାର ! ବଡ଼ ବାବାଜୀ ମହାଶୟ ଲୋକମାନଙ୍କୁ ଅତି ଆନନ୍ଦରେ ପ୍ରସାଦ ବିତରଣ କଲେ । ଶ୍ରୀ ଶ୍ରୀ ସାକ୍ଷୀଗୋପାଳ ଶ୍ରୀ ମନ୍ଦିରରେ ଆନନ୍ଦର ଉତ୍ସ ଛୁଟିଗଲା । ପୁନର୍ବାର ସମସ୍ତେ କୀର୍ତ୍ତନରେ ମଗ୍ନ ହେଲେ ।

## ସିଦ୍ଧମନ୍ତ୍ର-ପ୍ରାପ୍ତି

କ୍ରମେ ରାତ୍ରି ଅଧିକ ହେଲା । ଠାକୁରଙ୍କର ଶୟନ ପରେ ସମସ୍ତେ ଶ୍ରୀମନ୍ଦିରର ବହିର୍ଦେଶରେ ଆସି ଶୟନ କଲେ । ଗଭୀର ରଜନୀ—ଚତୁର୍ଦ୍ଦିଗ ନିସ୍ତବ୍ଧ । ହଠାତ୍ ବଡ଼ ବାବାଜୀ ମହାଶୟ ଉଚ୍ଚସ୍ୱରରେ କାନ୍ଦି ଉଠିଲେ । ନବଦ୍ୱୀପ ଦାଦା ଓ ଅନ୍ୟସଙ୍ଗୀମାନେ ବହୁ ସାନ୍ତ୍ୱନା ବାକ୍ୟରେ ତାଙ୍କୁ ସ୍ଥିର କରାଇ ବିବରଣ ଜିଜ୍ଞାସା କରିବାରୁ ସେ ଗଦ୍‌ଗଦ୍ କଣ୍ଠରେ କହିଲେ—"ଭାଇ ! କ'ଣ ଆଉ କହିବି ! ମୁଁ ନିଦ୍ରିତ କି ଜାଗ୍ରତ କିଛି ଉପଲବ୍ଧି କରିପାରିଲି ନାହିଁ । ହଠାତ୍ ଦେଖେ,—ଆଜାନୁଲମ୍ବିତ ଭୁଜ, ଆକର୍ଣ୍ଣ ବିସ୍ତୃତ ନୟନ, ଅତି ଦୀର୍ଘକାୟ, କାଶ୍ମୀର ଗୌରବର୍ଣ୍ଣ ଓ କାଞ୍ଚନ କାନ୍ତି ଦୁଇଜଣ ମହାପୁରୁଷ ମୋର ମସ୍ତକ ନିକଟରେ ବସିଲେ ଏବଂ କାଶ୍ମୀର ଗୌରବର୍ଣ୍ଣ ପୁରୁଷ ମୋତେ କହିଲେ, 'ତୁମେ ମନୋଯୋଗପୂର୍ବକ ମୋର କେତୋଟି କଥା ଶ୍ରବଣ କର । ମୁଁ ତୁମକୁ ଏହି ମନ୍ତ୍ରଟି ଦେଉଛି । ତୁମେ ଏହି ମନ୍ତ୍ର ଅତି ଯତ୍ନ ସହକାରେ ଆରାଧନା କରିବ ଏବଂ ଶ୍ରଦ୍ଧାପୂର୍ବକ ଯେ ଗ୍ରହଣ କରିବ,

ତାଙ୍କୁ ଅବଗୃତରେ ପ୍ରଦାନ କରବ ।' ଏହାକହ୍ସ ଦ୍ୱାବିଂଶ ଅକ୍ଷର ଗୌରମନ୍ତ୍ର କର୍ଣ୍ଣରେ ପ୍ରଦାନ କର ଅନ୍ତର୍ହିତ ହୋଇଯିବା ପରେ ନିଦ୍ରାଭଙ୍ଗ ହୋଇଗଲା । ହାୟ ! ଏପର ଅମୂଲ୍ୟ ରତ୍ନପାଇ ଭାଗ୍ୟଦୋଷରେ ମୁଁ କଛି ଯତ୍ନ କରପାରଲି ନାହିଁ । ଏପର କ ସେ ମନୋହର ମୂର୍ତ୍ତି ଦୁଇଟିକୁ ନୟନଭର କଛିକ୍ଷଣ ଦର୍ଶନ ମଧ୍ୟ କରପାରଲି ନାହିଁ ।" ଏହା କହ୍ସକହ୍ସ ଠିକ୍ ବାଳକଟିଏ ପର କାନ୍ଦିବାକୁ ଲାଗିଲେ । ଏହ୍ସପର ରାତ୍ରିଟି କଟିଗଲା । ପ୍ରଭାତ ସମୟରେ ବଡ଼ବାବାଜୀ ମହାଶୟଙ୍କର ଚକ୍ଷୁ ଜଳରେ ମୁଖ ଓ ବକ୍ଷ ଭାସିଯାଉଛି । ମୁହଁରେ କେବଳ "ହା ନିତାଇ, ଜୟ ନିତାଇ ।" ସଙ୍ଗୀଗଣ ଅସ୍ଥିର ହୋଇପଡ଼ିଲେ । ତାଙ୍କର କେତେବେଳେ ନୃତ୍ୟ, କେତେବେଳେ ଭୂମିରେ ଗଡ଼ିଯିବା, କେତେବେଳେ ବା ଉଚ୍ଚ କଣ୍ଠରେ ଚିତ୍କାର, କେତେବେଳେ ମୃଦୁ ସ୍ୱରରେ କାତର କଣ୍ଠରେ କରୁଣ ରୋଦନ । ଏଇ ସମସ୍ତ ଦେଖି ଶୁଣି ସଙ୍ଗୀଗଣ ଅତିଶୟ ବିଚଳିତ ହୋଇ ନାନାପ୍ରକାର ସାନ୍ତ୍ୱନା ବାକ୍ୟରେ ତାହାଙ୍କୁ ପ୍ରବୋଧ ଦେବାକୁ ଲାଗିଲେ । ବଡ଼ବାବାଜୀ ମହାଶୟ ପ୍ରେମୋନ୍ମତ୍ତ ଭାବରେ ସଙ୍ଗୀମାନଙ୍କୁ ଧର କାନ୍ଦିବାକୁ ଲାଗିଲେ ।

କଛିକ୍ଷଣ ପରେ କୀର୍ତ୍ତନରେ ମତ୍ତହୋଇ ସମସ୍ତେ ଶ୍ରୀକ୍ଷେତ୍ର ଅଭିମୁଖରେ ଯାତ୍ରା କଲେ । "ହା ନିତାଇ, ଜୟ ନିତାଇ"ର ଧ୍ୱନି ଆକାଶ ଅବନୀକୁ ପ୍ରକମ୍ପିତ କରୁଛି । ଯେତେ ଯେତେ ନୀଳାଚଳର ନିକଟବର୍ତ୍ତୀ ହେଉଛନ୍ତି, ସେତିକ ମନର ଆନନ୍ଦ ବଢ଼ିବଢ଼ି ଚାଲିଛି । ଯଥା ସମୟରେ ଶ୍ରୀ ଶ୍ରୀ ଜଗନ୍ନାଥ-କ୍ଷେତ୍ରରେ ପ୍ରବେଶ କଲେ । ନୀଳାଚଳବାସୀ ଏହ୍ସ ପ୍ରେମୋନ୍ମତ୍ତ ବୈଷ୍ଣବମୂର୍ତ୍ତି-ଚତୁଷ୍ଟୟଙ୍କୁ ଦେଖି ଆନନ୍ଦରେ ଆତ୍ମହରା ହୋଇପଡ଼ିଲେ । 'ଏମାନେ କଏ ? କେଉଁ-ଠାରୁ ଆସିଲେ, କେଉଁଆଡ଼େ ଚାଲିଛନ୍ତି ?' ସମସ୍ତଙ୍କ ମୁହଁରେ

କେବଳ ଏଇ କଥା । ଏମାନେ କନ୍ତୁ କୌଣସି ଦିଗକୁ ଲକ୍ଷ୍ୟ ନକରି ପ୍ରେମାନନ୍ଦରେ ବିଭୋର ହୋଇ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ଶ୍ରୀମନ୍ଦିର ଆଡ଼କୁ ଧାଇଁଛନ୍ତି ।

# ଶ୍ରୀ ଶ୍ରୀ ଜଗନ୍ନାଥ ଦର୍ଶନ

ଅଳ୍ପକ୍ଷଣ ମଧ୍ୟରେ ଏମାନେ ସିଂହଦ୍ୱାର ନିକଟରେ ଉପସ୍ଥିତ ହୋଇ ଅରୁଣସ୍ତମ୍ଭ ନିକଟରେ ବଡ଼ବାବାଜୀ ମହାଶୟ ପ୍ରେମମୟ ଶ୍ରୀନୀଳାଚଳ ନାଥଙ୍କର ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ଦଣ୍ଡବତ ପ୍ରଣାମ କଲେ । ସଙ୍ଗୀଗଣ ମଧ୍ୟ ତଦନୁରୂପ ଅନୁକରଣ କଲେ । କ୍ରମେ ଶ୍ରୀମନ୍ଦିରର ଅଭ୍ୟନ୍ତରରେ ପ୍ରବେଶ କରି ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ଅପୂର୍ବ ମୂର୍ତ୍ତି ଦର୍ଶନ କରି ପ୍ରେମାନନ୍ଦରେ କୀର୍ତ୍ତନ ଆରମ୍ଭ କରିଦେଲେ । ଶ୍ରୀମନ୍ଦିରରେ ଆନନ୍ଦର ତରଙ୍ଗ ଖେଳିଗଲା । ସମସ୍ତେ ପ୍ରେମାନନ୍ଦରେ ଅଧୀର ହୋଇ ନୃତ୍ୟ କରିବାକୁ ଲାଗିଲେ । କେଉଁଠାରୁ ଯେ ଏପରି ସୁନ୍ଦର ଏବଂ ପରମ ଉପାଦେୟ ପଦାବଳୀର ଉଦ୍‌ଗମ ହେବାକୁ ଲାଗିଲା, କିଏ ତାହାର ନିର୍ଦ୍ଧାରଣ କରିବ ? ମନେହେଲା, ମୁଖସ୍ଥ କରି ମଧ୍ୟ କେହି ଏ ସମସ୍ତ ପଦାବଳୀ ଏତେ ଦ୍ରୁତ ବେଗରେ ଆବୃତ୍ତି କରିପାରିବ କି ନା ସନ୍ଦେହ । ବଡ଼ବାବାଜୀ ମହାଶୟଙ୍କର ଆଜାନୁଲମ୍ବିତ ଭୁଜଯୁଗ ଶୋଭିତ ସେହି ବିଶାଳ ଶରୀର ସାତ୍ତ୍ୱିକ ଭୂଷଣରେ ବିଭୂଷିତ । ଏପରି ଭାବାବେଶ, ଏପରି ମଧୁର କୀର୍ତ୍ତନ ଧ୍ୱନି, ଏପରି ଉଦ୍ଦଣ୍ଡ ନୃତ୍ୟ ଶ୍ରୀମନ୍ ମହାପ୍ରଭୁଙ୍କର ଅପ୍ରକଟ ପରେ ଆଉ କେହି କେତେବେଳେ ପ୍ରତ୍ୟକ୍ଷ କରିଛି କି ନା ସନ୍ଦେହ । ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ପଣ୍ଡା, ସେବକ, ପୂଜାରୀଗଣ ମନ୍ତ୍ରମୁଗ୍ଧବତ୍ ସେଠାରେ ଦଣ୍ଡାୟମାନ ରହିଛନ୍ତି । ସ୍ତ୍ରୀ, ପୁରୁଷ, ବାଳକ, ବୃଦ୍ଧ,

ଯୁବା କେହି ସେହି ପ୍ରାଣଖୋଲା ନୃତ୍ୟ ଦେଖି ସ୍ଥିର ହୋଇ ରହିପାରିଲେ ନାହିଁ । ଆଜି ଜଗମୋହନ ଅପରୂପ ରୂପ ଧାରଣ କରି ଯେପରି ସାକ୍ଷାତ୍ ଜଗନ୍ମୋହନ ହୋଇଛନ୍ତି । ଆନନ୍ଦରେ ଉନ୍ମତ୍ତ ହୋଇ କେହି କାହା ଉପରେ ପଡ଼ିଯାଉଛନ୍ତି । କେହି କାନ୍ଦି କାନ୍ଦି ଆକୁଳ, କେହି କେହି ବା ହସିହସି ଉନ୍ମତ୍ତ । କେହି ବା ପ୍ରେମାନନ୍ଦରେ ବଡ଼ ବାବାଜୀ ମହାଶୟଙ୍କର ଚରଣ ଧରି କାନ୍ଦିକାନ୍ଦି ଭୂମିରେ ଲୋଟିଯାଉଛନ୍ତି । ଶ୍ରୀମନ୍ଦିର ମଧ୍ୟରେ ଆଜି ଅପୂର୍ବ ଦୃଶ୍ୟ ! ଏଇ ଅଦ୍ଭୁତ ଦୃଶ୍ୟ ଭାଷାରେ ବର୍ଣ୍ଣନା କରାଯାଇ-ପାରେନା । ଯିଏ ଏହି ମଧୁମୟ ଦୃଶ୍ୟ ପ୍ରତ୍ୟକ୍ଷ ଅନୁଭବ କରିଛି, ସେଇ ମାତ୍ର ଏହାର ମର୍ମ ବୁଝିପାରିବ ।

କ୍ରମେ ବେଳା ତୃତୀୟ ପ୍ରହର ହେଲା । ମାଧବ ପଶୁପାଳକ ନାମରେ ଶ୍ରୀଶ୍ରୀ ଜଗନ୍ନାଥ ଦେବଙ୍କର ଜଣେ ଶିଙ୍ଗାରି ପଣ୍ଡା ପ୍ରସାଦୀ ମାଳା ଆଣି ବାବାଜୀ ମହାଶୟଙ୍କ ଗଳାରେ ପିନ୍ଧାଇ ଦେଲେ । ଏପରି ସମୟରେ ଶ୍ରୀଶ୍ରୀ ଜଗନ୍ନାଥ ଦେବଙ୍କର ମଧ୍ୟାହ୍ନ ଧୂପ ଉଠିଲା—ଭିତର କବାଟ ବନ୍ଦ ହୋଇଗଲା—କୀର୍ତ୍ତନର ବିରାମ ହେଲା । ସେତେବେଳେ ସମସ୍ତେ ସେହି ସୁଦୀର୍ଘକାଳ କୀର୍ତ୍ତନ ଶ୍ରାନ୍ତ ମହାପୁରୁଷଙ୍କର ସେବା ଶୁଶ୍ରୂଷା କରିବାକୁ ଲାଗିଲେ । ଜଣେ ଗୌରବର୍ଣ୍ଣ ବୃଦ୍ଧ ବାବାଜୀ ଆସି ତାଙ୍କ ନିକଟରେ ବସିଲେ । ଅନେକ ଭକ୍ତଗଣ ନାନାବିଧ ପିଠାପଣା ମହାପ୍ରସାଦ ଆଣି ପହଞ୍ଚାଇଲେ । ପ୍ରସାଦ ବିତରଣର ବ୍ୟବସ୍ଥା କିଏ କରିବ ; ସମସ୍ତେ ତ ପ୍ରେମୋନ୍ମତ୍ତ । ସେତେବେଳେ ସେଇ ବୃଦ୍ଧ ବବାଜୀ ମହାଶୟ କହି ଉଠିଲେ, "ବଳରାମ, ତୁମେ ଏଇସବୁ ପ୍ରସାଦର ବ୍ୟବସ୍ଥା କର ।" ଏଇ ଆଦେଶ ପାଳନକରି ବଳରାମ ପଟ୍ଟନାୟକ ନାମକ ଜନୈକ ଭକ୍ତ ସେଇ ସମସ୍ତ ମହାପ୍ରସାଦ ଏକତ୍ର କରି

ନବାଗତ ବୈଷ୍ଣବ ଚତୁଷ୍ଟୟଙ୍କୁ ଏବଂ ଉପସ୍ଥିତ ଭକ୍ତଗଣଙ୍କୁ ଯଥା-ଯୋଗ୍ୟ ସ୍ଥାନରେ ବସାଇ ଅତି ଯତ୍ନ ସହକାରେ ପରିବେଷଣ କରିବାକୁ ଲାଗିଲେ । ସମସ୍ତେ ସେଇ ଜଗମୋହନ ପଥର ଚଟାଣ ଉପରେ ବସି ମହାପ୍ରସାଦ ଗ୍ରହଣ କଲେ । ସର୍ବ ପ୍ରଥମେ ବୃଦ୍ଧ ବାବାଜୀ ମହାଶୟ ଏକ ଗ୍ରାସ ମହାପ୍ରସାଦ ହସ୍ତରେ ନେଇ ବଡ଼ ବାବାଜୀ ମହାଶୟଙ୍କ ମୁଖରେ ଦିଅନ୍ତେ ଚତୁର୍ଦ୍ଦିଗରୁ "ହରିବୋଲ ହରିବୋଲ" ଧ୍ୱନି ଉଠିଲା । ଗୃହସ୍ଥ ଲୋକ ଗୃହ କଥା ଭୁଲି ଗଲେ । ରାଜକର୍ମଚାରୀଗଣ ପ୍ରେମାନନ୍ଦରେ ରାଜକାର୍ଯ୍ୟ ଭୁଲିଗଲେ ; ସମସ୍ତେ ଯେପରି ଆତ୍ମହରା ଜ୍ଞାନଶୂନ୍ୟ । ଉପସ୍ଥିତ ଭକ୍ତ ବୃନ୍ଦ ମଧ୍ୟରେ ବଳରାମବାବୁ, କୁଞ୍ଜବିହାରୀ ରାଏ, ଗୋପାଳ ପ୍ରସାଦ ଦତ୍ତ, ଅର୍ଜ୍ଜୁନ ସାନ୍ତ୍ରା, ଗଣେଶ ମହାନ୍ତି, ଗୋପାଳ ଚନ୍ଦ୍ର ପଟ୍ଟନାୟକ, ଭୁବନ ଚନ୍ଦ୍ର ସାହୁ, ଗୋପୀ ମୋହନ ସାହୁ ପ୍ରଭୃତି ଆଠ ଦଶଜଣ ବଡ଼ ବାବାଜୀ ମହାଶୟଙ୍କ ପୂର୍ବ ରହଣି ସମୟ ମଧ୍ୟରେ ବିଶେଷ ଅନ୍ତରଙ୍ଗ ଥିଲେ । ଏମାନଙ୍କ ଭଳି ଭାଗ୍ୟବାନ୍ ଆଉ କିଏ ଅଛି ?

## ଗମ୍ଭୀରାକୁ ଗମନ

ପୂର୍ବ କଥିତ ବୃଦ୍ଧ ବାବାଜୀଙ୍କର ନାମ **ଶ୍ରୀ ରାମକୃଷ୍ଣ ଦାସ** । ବଡ଼ ବାବାଜୀ ମହାଶୟ ବୃଦ୍ଧ ବାବାଜୀ ମହାଶୟଙ୍କୁ ପ୍ରଶ୍ନ କଲେ, "ବାବା ! ଏଠାରୁ ଗମ୍ଭୀରା କେତେଦୂର ହେବ ?" ଉପସ୍ଥିତ ଭକ୍ତ ବୃନ୍ଦ ସମସ୍ୱରରେ କହି ଉଠିଲେ, "ଏଇ ତ, ନିକଟରେ, ଚାଲନ୍ତୁ ନା"

ବଡ଼ ବାବାଜୀ—ଆପଣଙ୍କୁ ବୋଧହୁଏ କଷ୍ଟ ହେବ ।

ବୃଦ୍ଧ ବାବାଜୀ—ଯେଉଁ ମୂହୂର୍ତ୍ତରୁ ଆପଣଙ୍କର ଦର୍ଶନ ଲାଭ କରିଛି, ସେଇ ମୁହୂର୍ତ୍ତରୁ ମୋର ସର୍ବବିଧ ଶାରିରୀକ, ମାନସିକ କଷ୍ଟ ଦୂର ହୋଇଯାଇଛି । ବର୍ତ୍ତମାନ ମୁଁ ଯେ କି ଆନନ୍ଦ ଅନୁଭବ କରୁଛି, କଥାରେ ପ୍ରକାଶ କରିବାକୁ ଅକ୍ଷମ । ଲଜ୍ୟାବନତ ବଦନରେ ଈଷତ୍ ହସି ବଡ଼ବାବାଜୀ ମହାଶୟ କୀର୍ତ୍ତନ ଧରିଲେ—

"କୋଥାଏ ହେ ଗୌରାଙ୍ଗ ଗୃନ୍ଦ ଦେଖା ଦାଓ ମୋରେ ।
ଗୌଡ଼ ହଇତେ ଆସିଆଛି ଦେଖିତେ ତୋମାରେ ॥
ବହୁଦିନ ଦେଖିନାଇ ଓ ଚାଁନ୍ଦ ବଦନ ।
ଦେଖାଦିଏ ପ୍ରାନ ରାଖ ହେ ଶଚୀନନ୍ଦନ ॥
ନିତ୍ୟାନନ୍ଦ ସଙ୍ଗେ ଲଇଆ ବିହରିଛ ଯଥା
କେ ହେନ ବାନ୍ଧବ ଆଛେ ଲଏଯାଏ ତଥା ॥
ଏଇ ତ ଗମ୍ଭୀରା ହେଥା ଥାକ ସର୍ବକ୍ଷଣ ।
ସ୍ୱରୂପ ରାମାନନ୍ଦ ଲଇଆ ରସ ଆସ୍ୱାନନ୍ଦ ॥

ଏଇପରି ନିଜକୃତ ବହୁ ପଦାବଳୀ ଗାନ କରି କରି ଗମ୍ଭୀରାକୁ ପ୍ରବେଶ କଲେ । ଗମ୍ଭୀରାର ଅଧିକାରୀ ଶ୍ରୀ ହରି ଭଜନ ଦାସ ବାବାଜୀ ଆସି ତାହାଙ୍କୁ ଶ୍ରୀମନ୍ ମହାପ୍ରଭୁଙ୍କର ବ୍ୟବହୃତ କନ୍ଥା ଦର୍ଶନ କରାଇ ଦେବାମାତ୍ରେ ବଡ଼ ବାବାଜୀ ମହାଶୟ ପ୍ରେମାନନ୍ଦରେ ବିଭୋର ହୋଇ ଅଶ୍ରୁଳ ନୟନରେ ଭାବ ଗଦ୍‌ଗଦ୍ କଣ୍ଠରେ କହିବାକୁ ଲାଗିଲେ, "ହେ ପ୍ରଭୁ ଗୌରାଙ୍ଗ ଦେବ ! ଏ ଦାସକୁ କୃପା କର । ତୁମର ଦାସାନୁ ଦାସଗଣର ଦାସ କରି ଏ ଅଧମକୁ ଶ୍ରୀ ଚରଣ ତଳେ ସ୍ଥାନ ଦେବାକୁ ଭୁଲି ଯାଅନା ।" ଏହା କହି କହି ମୂର୍ଚ୍ଛା ହୋଇ ଭୂମି ତଳେ ନିପତିତ ହେଲେ । ସଙ୍ଗୀମାନଙ୍କର ଶୁଶ୍ରୂଷା ଲାଭ କରି କ୍ଷଣକାଳ ପରେ ଚୈତନ୍ୟ ଲାଭ କରି ଝଟେ ଶ୍ରୀ ବାସୁଦେବ ସାର୍ବଭୌମ ଭଟ୍ଟାଚାର୍ଯ୍ୟ

ମହାଶୟଙ୍କର ବାସସ୍ଥାନ ଏବଂ ଶ୍ରୀ ସିଦ୍ଧ ବକୁଳ ମଠ ପ୍ରଭୃତି ସ୍ଥାନ ସକଳ ଦର୍ଶନ କଲେ । କେଉଁଠାକୁ ଯିବେ, କେଉଁଠାରେ ରହିବେ, ତାର କିଛି ସ୍ଥିରତା ନାହିଁ । ଶ୍ରୀ ରାମକୃଷ୍ଣ ଦାସ ବାବାଜି ମହାଶୟ ଜିଜ୍ଞାସା କଲେ, "ଆପଣଙ୍କର ରହିବା ସ୍ଥାନ କ'ଣ ନିର୍ଦ୍ଦିଷ୍ଟ ହୋଇଯାଇଛି ?" ଉତ୍ତରରେ ବଡ଼ ବାବାଜୀ ମହାଶୟ କହିଲେ, "ସେଥିଲାଗି ଆପଣଙ୍କର ଭାବନାର କୌଣସି ପ୍ରୟୋଜନ ନାହିଁ । କୃପାମୟ ପ୍ରଭୁ କୃପା କରି ଯେଉଁଠାରେ ଆଶ୍ରୟ ଦେବେ, ସେଇ ସ୍ଥାନରେ ରହିଯିବା ।"

ବଳରାମ ବାବୁ କହିଲେ, "ସମ୍ପ୍ରତି ଆମର ଠାକୁର ବାଡକୁ ଆପଣଙ୍କର କୌଣସି ଆପତ୍ତି ଅଛି କି ?

ବଡ଼ ବାବାଜୀ ମହାଶୟ କହିଲେ, "ଭାଇ, ଯଦି ତୁମର କୌଣସି ଅସୁବିଧା ନହୁଏ, ତେବେ ଆମର କୌଣସି ଆପତ୍ତି ନାହିଁ ।" ଏହି ସମୟରେ ଗଣେଶ ପଟ୍ଟନାୟକ କହିଲେ, "ଆଜ୍ଞା, ମୋର ଦୋଳମଣ୍ଡପ ସାହିର ବାହାର ଘରେ ରହିଲେ ଆପଣଙ୍କର ବିଶେଷ ସୁବିଧା ହେବ, କାରଣ ସେ ସ୍ଥାନଟି ଶ୍ରୀଶ୍ରୀ ଜଗନ୍ନାଥ ଦେବଙ୍କ ମନ୍ଦିରର ଅତି ନିକଟବର୍ତ୍ତୀ, ସୁତରାଂ ଭକ୍ତବୃନ୍ଦଙ୍କର ଯାତାୟାତ ପକ୍ଷେ ସୁବିଧାଜନକ ହେବ !" ବଡ଼ବାବାଜୀ ମହାଶୟ ବିଷମ ସମସ୍ୟାରେ ପଡ଼ିଲେ । ବଳରାମର କଥା ରକ୍ଷା କରିବେ କି ଗଣେଶର କଥା ରକ୍ଷା କରିବେ, କିଛି ସ୍ଥିର କରିପାରିଲେ ନାହିଁ । ବୃଦ୍ଧ ରାମକୃଷ୍ଣ ଦାସ ବାବାଜୀ ମହାଶୟ ମଧ୍ୟସ୍ଥ ହୋଇ ଗଣେଶ ପଟ୍ଟନାୟକଙ୍କର ଗୃହରେ ରହିବାକୁ ସ୍ଥିର କରିଦେଲେ । ସମସ୍ତେ ପ୍ରଫୁଲ୍ଲ ଚିତ୍ତରେ ନାମ କରି କରି ଗଣେଶଙ୍କ ଘରକୁ ଗଲେ । ତାଙ୍କ ଘରକୁ ଲାଗି ତାଙ୍କର ଭାଇଙ୍କର ଘରେ ରାନ୍ଧି ପ୍ରସାଦ ପାଇବାର ବ୍ୟବସ୍ଥା ହେଲା । "ଗୌଡ଼ ଦେଶରୁ ଗୁରୁଜଣ

ବାବାଜୀ ଆସିଛନ୍ତି, ସେମାନେ ଅପୂର୍ବ କୀର୍ତ୍ତନ କରନ୍ତି" ଏଇ କଥା ସମଗ୍ର ଶ୍ରୀକ୍ଷେତ୍ରରେ ରଷ୍ଟ୍ର ହୋଇଗଲା । ଆରମ୍ଭ କୀର୍ତ୍ତନ ପରେ ମହାପ୍ରସାଦ ଗ୍ରହଣ ପୂର୍ବକ ବଡ଼ ବାବାଜୀ ମହାଶୟ ଅନ୍ୟମାନଙ୍କ ସହିତ ଗଣେଶ ପଟ୍ଟନାୟକଙ୍କ ଘରକୁ ଯାଇ ବିଶ୍ରାମ କଲେ । ପ୍ରଭାତରେ ନରେନ୍ଦ୍ର ସରୋବରରେ ସ୍ନାନାଦି ପ୍ରାତଃକୃତ୍ୟ ସମାପନ କରି ନାମ କୀର୍ତ୍ତନ କରିକରି ଶ୍ରୀଶ୍ରୀ ଜଗନ୍ନାଥ ଦର୍ଶନରେ ବାହାରି ପଡ଼ିଲେ । ବଳରାମବାବୁ ଆସି ଆଗ୍ରହରେ ଜିଜ୍ଞାସା କଲେ, "ଆଜ ଆମର ଠାକୁର ମନ୍ଦିରରେ ପ୍ରସାଦର ବ୍ୟବସ୍ଥା କରାଯାଉ ।" ବଡ଼ ବାବାଜୀ ମହାଶୟ କହିଲେ, "ଆମ୍ଭମାନଙ୍କ ଲାଗି କୌଣସି ପ୍ରକାରେ ବ୍ୟବସ୍ଥାର ପ୍ରୟୋଜନ ନାହିଁ । କୃପାମୟ ପ୍ରଭୁ ଉପସ୍ଥିତିମତ ଯାହା କରିବେ, ତାହାହିଁ ହେବ ।" ଏହା କହି ପ୍ରେମାନନ୍ଦରେ ନୃତ୍ୟ କରି କରି ସମସ୍ତେ ଜଗନ୍ନାଥ ଦେବଙ୍କ ଶ୍ରୀ ମନ୍ଦିରରେ ପ୍ରବେଶ କଲେ । ପୂର୍ବବତ୍ ଜଗମୋହନ କୀର୍ତ୍ତନ ଆରମ୍ଭ ହେଲା । ପଣ୍ଡାମାନେ ପ୍ରସାଦୀ ମାଳା, ଚରଣ ତୁଳସୀ ଓ ଚନ୍ଦନ ଆଣି ସମସ୍ତଙ୍କୁ ଦେଲେ । କ୍ରମେ କୀର୍ତ୍ତନଟି ବେଶ୍ ଜମି ଆସିଲା । ସମସ୍ତେ ପ୍ରେମାନନ୍ଦରେ ବିଭୋର । ବଡ଼ ବାବାଜୀ ମହାଶୟଙ୍କୁ ମଧ୍ୟ ସ୍ଥଳରେ ରଖି ସମସ୍ତେ ମଣ୍ଡଳୀ ବନ୍ଧନରେ ନୃତ୍ୟ କରିବାକୁ ଲାଗିଲେ । ଆହା, କି ଅପରୂପ ଶୋଭା ! କି ଅନିର୍ବଚନୀୟ ଆକର୍ଷଣୀ ଶକ୍ତି !! ବହୁକ୍ଷଣ କୀର୍ତ୍ତନ ପରେ କୀର୍ତ୍ତନଶ୍ରାନ୍ତ ଭକ୍ତଗଣ ମହାପ୍ରସାଦ ସେବନ କଲେ ।

## ସମୁଦ୍ର ସ୍ନାନ ଓ ଚଟକ ପର୍ବତ ଦର୍ଶନ

ମହାପ୍ରସାଦ ଗ୍ରହଣ ପରେ ପରେ ସମସ୍ତେ କୀର୍ତ୍ତନ କରି କରି ସମୁଦ୍ରରେ ସ୍ନାନ କରିବାକୁ ବାହାରି ପଡ଼ିଲେ । କିଛି

ଦୂର ଯିବାପରେ ବାଟରେ ଗୋଟିଏ ବାଲୁକା ପର୍ବତ ଦେଖି ବଡ଼ ବାବାଜୀ ମହାଶୟ ପ୍ରେମ ବିହ୍ୱଳ ଭାବରେ ମୂର୍ଚ୍ଛିତ ହୋଇ ପଡ଼ିଲେ । ଭକ୍ତମାନଙ୍କର ବହୁ ସନ୍ତର୍ପଣରେ କିଞ୍ଚିତ୍ ପ୍ରକୃତିସ୍ଥ ହେଲେ । କିନ୍ତୁ ପ୍ରେମାନନ୍ଦରେ ବିଭୋର ହୋଇ ସେଇ ପର୍ବତ ଉପରିସ୍ଥ ଗୋଟିଏ ବଟବୃକ୍ଷ ତଳେ ବସି ଅତିଶୟ ମୃଦୁ ସ୍ୱରରେ କାନ୍ଦି କାନ୍ଦି ଅନ୍ତରଙ୍ଗ ସଙ୍ଗୀମାନଙ୍କୁ କହିଲେ, "ଦୂରରୁ ଏଇ ବଟବୃକ୍ଷ ତଳେ ସ୍ୱରୂପ ଦାମୋଦର ସଙ୍ଗେ ମୋର ପ୍ରାଣର ଗୌରାଙ୍ଗଙ୍କୁ ଦର୍ଶନ କଲି । କିନ୍ତୁ ନିକଟରେ ପହଞ୍ଚି ଆଉ ଦେଖି ପାରିଲି ନାହିଁ । ଏଇ ବନ ମଧ୍ୟରେ ପ୍ରାଣ ଗୌରାଙ୍ଗ ମୋର, ଶ୍ରୀ ବୃନ୍ଦାବନ ଦର୍ଶନ କରିଥିଲେ । ଏଇ ବଟବୃକ୍ଷକୁ ସେ ବଂଶୀବଟ ମନେ କରିଥିଲେ ଏବଂ ଏଇ ଚଟକ ପର୍ବତକୁ ଗିରି ଗୋବର୍ଦ୍ଧନ ଭ୍ରମରେ ପ୍ରେମାନନ୍ଦରେ ପୂର୍ବଲୀଳା ସ୍ମରଣପୂର୍ବକ ସ୍ୱରୂପର ଗଳାଧରି ନାନା ରୂପରେ ବିଳାପ କରୁଥିଲେ, ।" ଏହା କହି ସେ ଜଣେ ଭକ୍ତକୁ ଶ୍ରୀ ଚରିତାମୃତର "ଚଟକ ପର୍ବତ ଦର୍ଶନେ ମହାପ୍ରଭୁର ପ୍ରଳାପ ବର୍ଣ୍ଣନ" ସ୍ଥାନଟି ପାଠ କରିବାକୁ କହିଲେ । ପ୍ରେମିକ ଭକ୍ତଟି ତତ୍‌କ୍ଷଣାତ୍ 'ଗୋବର୍ଦ୍ଧନ ହଇତେ ଇହା କେମନେ କେ ଆନିଲ" ଇତ୍ୟାଦି ଅଂଶ ଆବୃତ୍ତି କରି ତାଙ୍କ ମନ ତୁଷ୍ଟ କଲେ । କିଛି କ୍ଷଣ ପରେ ବଡ଼ ବାବାଜୀ ମହାଶୟ ନୃତ୍ୟ କରି କରି ସମୁଦ୍ର ଅଭିମୁଖରେ ଚାଲିଲେ । ସମୁଦ୍ରର ତରଙ୍ଗମାଳା ଦର୍ଶନ କରି ପ୍ରେମୋନ୍ମତ୍ତ ଭାବରେ ଭକ୍ତଗଣଙ୍କୁ କହିଲେ, ପୂର୍ବେ ଏଇ ସମୁଦ୍ର ତୀର୍ଥରାଜ ଥିଲେ । ଶ୍ରୀମନ୍ ମହାପ୍ରଭୁଙ୍କର ଶ୍ରୀଚରଣ ସ୍ପର୍ଶରେ ମହା ମହା ତୀର୍ଥରାଜ ହୋଇଛନ୍ତି । ଏହି ସମୁଦ୍ର ତୀରରେ ପ୍ରଭୁଙ୍କର ପଦରଜ ପଡ଼ିଅଛି ବୋଲି ତୀର୍ଥରାଜ ତରଙ୍ଗ ଛଳରେ ପ୍ରେମାନନ୍ଦରେ କୂଳକୁ ଆସି ଗଡ଼ିଯାଉଛନ୍ତି । ଏହି ତୀର୍ଥରାଜ ଯାହାଙ୍କ କୃପା

କରିବେ, ଶ୍ରୀ ଗୌରାଙ୍ଗ ଧନ ତାଙ୍କୁ ଅନାୟାସରେ ମିଳିବ ।”
ଏହା କହି ସମୁଦ୍ର ତୀରରେ ବାଲୁକା ଉପରେ ପ୍ରେମାନନ୍ଦରେ
ଗଡ଼ିବାକୁ ଲଗିଲେ । ସମୁଦ୍ର ଦର୍ଶନରେ ଆଜ ତାଙ୍କର ହୃଦୟରେ
ପ୍ରେମସମୁଦ୍ରର ଜୁଆର ଉଠିଛି । କେତେକ୍ଷଣ ପରେ ସେ
ସଙ୍ଗୀମାନଙ୍କ ସହିତ ସମୁଦ୍ର ସ୍ନାନକଲେ । ସମୁଦ୍ର ସ୍ନାନ ଶେଷକରି
ସମସ୍ତେ ଶ୍ରୀ ହରିଦାସ ଠାକୁରଙ୍କର ସମାଧି ମନ୍ଦିର ଦର୍ଶନ କରିବାକୁ
ଚାଲିଲେ । ପୂଜ୍ୟପାଦ ଶ୍ରୀ ହରି ଦାସ ଠାକୁରଙ୍କର ସମାଧି-ମନ୍ଦିର
ଦର୍ଶନରେ ବଡ଼ ବାବାଜୀ ମହାଶୟ ଉଚ୍ଚ ସ୍ୱରରେ ନାମ ସଂକୀର୍ତ୍ତନ
କରି କରି ପ୍ରେମାନନ୍ଦରେ ମୂର୍ଚ୍ଛା ହୋଇପଡ଼ିଲେ । ଶ୍ରୀମନ ମହାପ୍ରଭୁ
ସ୍ୱହସ୍ତରେ ହରି ଦାସ ଠାକୁରଙ୍କର ବାଲୁକା ସମାଧି ମନ୍ଦିର ପ୍ରସ୍ତୁତ
କରିଥିଲେ । ସ୍ୱୟଂ ଭିକ୍ଷାକରି ମହାସମାରୋହରେ ତାଙ୍କର
ବିରହୋତ୍ସବ ସମ୍ପନ୍ନ କରିଥିଲେ । ଏହିପରି ଭାବରେ ବିଭାବିତ
ହୋଇ ତାଙ୍କର ବାହ୍ୟଜ୍ଞାନ ରହିତ ହେଲା । ସଙ୍ଗୀମାନେ ତାଙ୍କ
ମନର ଭାବ ବୁଝି ଉଚ୍ଚସ୍ୱରରେ ହରିନାମ ସଂକୀର୍ତ୍ତନ ଦ୍ୱାରା ଅତି
କଷ୍ଟରେ ତାଙ୍କର ଚୈତନ୍ୟ ଫେରାଇ ଆଣି ପାରିଲେ । ତାପରେ
ଶ୍ରୀ ଜଗନ୍ନାଥ ଦେବଙ୍କର ଶ୍ରୀମନ୍ଦିରରେ ବାହାର ବେଢ଼ା ପରିକ୍ରମା
କରି ଗୃହକୁ ଫେରିଆସି ବିଶ୍ରାମ କଲେ ।

## ଜଗନ୍ନାଥ ବଲ୍ଲଭରେ ସ୍ଥିତି

ଦିନେ ବଡ଼ ବାବାଜୀ ମହାଶୟ ନରେନ୍ଦ୍ର ସରୋବରରେ
ସ୍ନାନାଦି ପ୍ରାତଃକୃତ୍ୟ ସମାପନ କରି କୀର୍ତ୍ତନ କରି କରି ଶ୍ରୀ ଜଗ-
ନ୍ନାଥ ଦେବଙ୍କ ମନ୍ଦିରକୁ ଯାଉଛନ୍ତି, ଠିକ୍ ଏହି ସମୟରେ
ଦେଖିଲେ, ଜଗନ୍ନାଥ ବଲ୍ଲଭ ମଠରୁ ରୁପାର ଛତା, ଚାମର
ପ୍ରଭୃତି ବାହାର ଆସୁଛି । ଦେଖୁ ଦେଖୁ ତାଙ୍କ ପଛେ ପଛେ

ଜନୈକ ସନ୍ନ୍ୟାସୀ ମଧ୍ୟ ରୂପାର ପାଦୁକା ପିନ୍ଧି ବାହାରି ଆସିଲେ । ପାର୍ଶ୍ୱସ୍ଥ ଜଣେ ବ୍ୟକ୍ତିଙ୍କଠାରୁ ସେହି ସନ୍ନ୍ୟାସୀଙ୍କର ପରିଚୟ ମିଳିଲା ଓ ତାଙ୍କର ନାମ **ଭୂତନାଥ ସ୍ୱାମୀ** । ସେ ଜଗନ୍ନାଥ ବଲ୍ଲଭର ରକ୍ଷଣାବେକ୍ଷଣ ଦାୟିତ୍ୱରେ ଅଛନ୍ତି । ବଡ଼ ବାବାଜୀ ମହାଶୟ ସଙ୍ଗୀମାନଙ୍କ ସହ ସନ୍ନ୍ୟାସୀ ଠାକୁରଙ୍କୁ ଦଣ୍ଡବତ ପ୍ରଣାମ କଲେ । ସନ୍ନ୍ୟାସୀ ଠାକୁର ମଧ୍ୟ 'ନାରାୟଣ' କହି ଆଶୀର୍ବାଦ କରି ଉଠାଇ ନେଲେ । ବଡ଼ ବାବାଜୀ ମହାଶୟ ସଦଳବଳେ କୀର୍ତ୍ତନ କରି କରି ଶ୍ରୀ ଜଗନ୍ନାଥ ଦର୍ଶନରେ ଆଗେଇ ଚାଲିଲେ । କିଛିଦୂର ଯିବା ପରେ ସ୍ୱାମୀଜୀ ଜଣେ ଲୋକ ଦ୍ୱାରା ବଡ଼ ବାବାଜୀ ମହାଶୟଙ୍କୁ ଡକାଇ ପଠାଇଲେ । ବଡ଼ ବାବାଜୀ ମହାଶୟ ଫେରି ଆସି ସ୍ୱାମୀଜୀଙ୍କୁ ଦଣ୍ଡବତ୍ ପ୍ରଣାମ କଲେ । ଏଥର କିନ୍ତୁ ସ୍ୱାମୀଜୀଙ୍କର ଭାବ ଅନ୍ୟ ରୂପ । କର ତୋଳି ଆଶୀର୍ବାଦ ନ କରି ସେ "ନମୋ ନାରାୟଣ" କହି ପ୍ରତିନମସ୍କାର କରି କହିଲେ, "ମହାତ୍ମନ୍ ! ଆପଣ କେଉଁଠାରେ ରହୁଛନ୍ତି ?"

ବଡ଼ବାବାଜୀ—ବାବା, ଆମ ବାସର ତ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ, ତେବେ ଆଜି କେତୋଟି ଦିନ ଆମେ ଗଣେଶ ପଟ୍ଟନାୟକଙ୍କର ବୈଠକଖାନାରେ ଅଛୁ ।

ସ୍ୱାମୀଜୀ—ଆପଣ ତ ଜଣେ ମହାତ୍ମା, ଆପଣଙ୍କୁ ଦର୍ଶନ କରି ମୋର ଚିତ୍ତ ପ୍ରସନ୍ନ ହୋଇଛି । ମୋର ମନେ ହେଉଛି, ଜଗନ୍ନାଥ ମିଶ୍ରଙ୍କର ପୁତ୍ର ଯେଉଁ କୃଷ୍ଣ ଚୈତନ୍ୟ ଥିଲେ, ଆପଣ ତାଙ୍କର ଅନ୍ତରଙ୍ଗ ସଙ୍ଗୀ; କିନ୍ତୁ ଭାବରେ ଆପଣ ତାଙ୍କର ସବୁ କିଛି ଅନୁକରଣ କରିନେଇଛନ୍ତି । ଆପଣଙ୍କୁ ମୁଁ ତ ଚୈତନ୍ୟ ଜ୍ଞାନ କରୁଛି । ମୁଁ ସନ୍ନ୍ୟାସୀ, ଆପଣ

ଟବୈଷ୍ଣବ । ଗୃହସ୍ଥର ଘରେ ରହିବା ଆପଣଙ୍କ ପକ୍ଷେ ଉଚିତ ନୁହେଁ । ଯାଆନ୍ତୁ, ମୋର ଜଗନ୍ନାଥ ବଲ୍ଲଭରେ ଗୋଟିଏ କୋଠରୀରେ ଆନନ୍ଦରେ କୀର୍ତ୍ତନ କରନ୍ତୁ ।

ବଡ଼ ବାବାଜୀ—ମହାତ୍ମନ୍, ଆପଣଙ୍କର ଆଦେଶ ଶିରୋଧାର୍ଯ୍ୟ ।

ଏହା କହି ପୁନରାୟ ସଂକୀର୍ତ୍ତନ କରି କରି ଶ୍ରୀ ମନ୍ଦିରକୁ ଗମନ କଲେ । ଏହା ପରେ ଦୁଇଦିନ କଟିଗଲା । ତୃତୀୟ ଦିନ ବଡ଼ ବାବାଜୀ ମହାଶୟ ଗଣେଶଙ୍କୁ କହି ସ୍ୱାମୀଜୀଙ୍କର ଆଦେଶ ମତେ ଜଗନ୍ନାଥ ବଲ୍ଲଭରେ ଗୋଟିଏ କୋଠରୀରେ ଆସି ରହିଲେ । ଭୂତନାଥ ସ୍ୱାମୀଙ୍କର ବଡ଼ ଆନନ୍ଦ ଓ ବଡ଼ ବାବାଜୀ ମହାଶୟଙ୍କ ଉପରେ ଖୁବ୍ ପ୍ରସନ୍ନ । ସେହିଦିନଠାରୁ ବଡ଼ ବାବାଜୀ ମହାଶୟ ଓ ଅନ୍ୟାନ୍ୟ ସଙ୍ଗୀମାନେ ବିଭିନ୍ନ ସ୍ଥାନରେ ମହାପ୍ରସାଦ ଗ୍ରହଣକରି ଜଗନ୍ନାଥ ବଲ୍ଲଭକୁ ଫେରି ଆସି ବିଶ୍ରାମ କଲେ ।

## କୃଷ୍ଣାନନ୍ଦ ଦାସଙ୍କ ସହିତ ମିଳନ

ଦିନେ ଜଣେ ଜଟାଜୁଟଧାରୀ ବଙ୍ଗାଳୀ ସାଧୁଙ୍କ ସହିତ ବଡ଼ ବାବାଜୀ ମହାଶୟଙ୍କର ସାକ୍ଷାତ ହେବା ପରେ ସାଧୁ ପ୍ରଶ୍ନ କଲେ, "ତୁମେ କେଉଁ ସମ୍ପ୍ରଦାୟଭୁକ୍ତ ?"

ବଡ଼ବାବାଜୀ—ଆମ୍ଭେ ଗୌଡ଼ୀୟ ବୈଷ୍ଣବ-ସମ୍ପ୍ରଦାୟ ଭୁକ୍ତ ।

ସାଧୁ—ଗୌଡ଼ୀୟ ଶବ୍ଦର ଅର୍ଥ କ'ଣ ?

ବଡ଼ ବାବାଜୀ—ଗୌଡ଼ ଦେଶବାସୀ । କିନ୍ତୁ ଆମେ 'ଗୌଡ଼ୀୟ' ନ କହି 'ଗୌରୀୟ' କହୁଥାଉ । କାରଣ ଏହି ସମ୍ପ୍ରଦାୟଟି

ଗୌର ସମ୍ବନ୍ଧୀୟ ସମ୍ପ୍ରଦାୟ । ଏଇଟି ମୋର ନିଜ ମନର କଥା ।

ସାଧୁ—ଗୌର କିଏ ?

ବଡ଼ବାବାଜୀ—ଗୌର ପୂର୍ଣ୍ଣ ପୂର୍ଣ୍ଣତମ ସାକ୍ଷାତ୍ ବ୍ରଜେନ୍ଦ୍ର ନନ୍ଦନ । କଳିରେ ପ୍ରଚ୍ଛନ୍ନ ଅବତାର ।

ସାଧୁ—ତାଙ୍କର ଜନ୍ମାଦି ଅଛି କି ?

ବଡ଼ବାବାଜୀ—ଅଛି କ'ଣ ମହାଶୟ ? ଶ୍ରୀ ଧାମ ନବଦ୍ୱୀପରେ ଶ୍ରୀ ଶ୍ରୀ ଶଚୀଦେବୀଙ୍କର ଗର୍ଭରେ ବୈଦିକ ଶ୍ରେଣୀ ପବିତ୍ର ବ୍ରାହ୍ମଣ କୁଳରେ ଶ୍ରୀ ଗୌରାଙ୍ଗ ଦେବ ଜନ୍ମ ଗ୍ରହଣ କରିଛନ୍ତି । ତାଙ୍କ ପିତାଙ୍କର ନାମ ଶ୍ରୀ ଶ୍ରୀ ଜଗନ୍ନାଥ ମିଶ୍ର ଠାକୁର ।

ସାଧୁ—ମହାଶୟ, ଆପଣ ଯଦି ଅସନ୍ତୁଷ୍ଟ ନ ହୁଅନ୍ତି, ତେବେ ମୁଁ କେତୋଟି କଥା କହିବାକୁ ଇଚ୍ଛା କରୁଛି ।

ବଡ଼ବାବାଜୀ—ମହାଶୟ, ନିଃସଙ୍କୋଚରେ କହିପାରନ୍ତି, ଆମେ ନିତ୍ୟାନନ୍ଦ ଦାସ, ଆମ୍ଭର କାହାରି ଉପରେ ଅସନ୍ତୁଷ୍ଟ ହେବାର ଅଧିକାର ନାହିଁ । ସ୍ୱଚ୍ଛନ୍ଦରେ କୁହନ୍ତୁ ।

ସାଧୁ—ମହାଶୟ, ଯିଏ ପୂର୍ଣ୍ଣ ପୂର୍ଣ୍ଣତମ ଭଗବାନ, ତାଙ୍କର କ'ଣ ପୁନର୍ଜନ୍ମ ସମ୍ଭବ ?

ବଡ଼ବାବାଜୀ—ଭଗବାନ ଜୀବର ଉଦ୍ଧାର ଲାଗି ନାନା ରୂପ ଧାରଣ କରି ଧର୍ମର ସଂସ୍ଥାପନ ଓ ଅଧର୍ମର ବିନାଶ କରିଥାଆନ୍ତି । ସେ ଲୀଳାମୟ, ଯେତେବେଳେ ତାଙ୍କର ଲୀଳା କରିବାର ଇଚ୍ଛାହୁଏ, ସେତେବେଳେ ସେ ସ୍ୱୟଂ

ମାନବ ରୂପରେ ଅବତୀର୍ଣ୍ଣ ହୋଇ ଲୀଳା ପ୍ରକାଶ କରିଥାଆନ୍ତି । ଯଥା—ଶ୍ରୀ ରାମଚନ୍ଦ୍ର, ଶ୍ରୀ କୃଷ୍ଣଚନ୍ଦ୍ର, ଶ୍ରୀ ଗୌରଚନ୍ଦ୍ର ଇତ୍ୟାଦି ।

ସାଧୁ—ଏ କଥା ତ କେହି ବିଶ୍ୱାସ କରିବେ ନାହିଁ । ଯଦି କୌଣସି ଶାସ୍ତ୍ର ପ୍ରମାଣ ଦେଖାଇ ପାରିବେ, ତେବେ ଲୋକ ବିଶ୍ୱାସ କରିପାରନ୍ତି ।

ବଡ଼ବାବାଜୀ—ମହାଶୟ, ଏ ବିଷୟରେ ଅନେକ ଶାସ୍ତ୍ରୀୟ ପ୍ରମାଣ ଅଛି, ସେ ସମସ୍ତ ଆପଣଙ୍କୁ ପରେ ଦେଖାଇବି । ତେବେ ମୁଁ ପ୍ରଥମରେ ଆପଣଙ୍କୁ ଗୋଟିଏ ପ୍ରତ୍ୟକ୍ଷ ପ୍ରମାଣ ଦେଖାଉଛି । ଆମର ନିତାଇ ଗୌରାଙ୍ଗ ଭୁବନ ମୋହନ ସର୍ବଚିତ୍ତାକର୍ଷକ ଅପରୂପ ରୂପ ଦେଖି ଯଦି ତାଙ୍କୁ ପ୍ରକୃତ ମନୁଷ୍ୟ ବୋଲି ଆପଣଙ୍କର ଜ୍ଞାନ ହୁଏ, ତେବେ ଶାସ୍ତ୍ର ଦେଖି ପାରନ୍ତି । ମୋ ମତରେ ଶାସ୍ତ୍ରଯୁକ୍ତି ପରୋକ୍ଷ ପ୍ରମାଣ । ଯାହାର ଶ୍ରୀମୂର୍ତ୍ତି ଦେଖିବା ମାତ୍ରେ ଅତିବଡ଼ ପାଷଣ୍ଡୀର ମନ-ପ୍ରାଣ ତାଙ୍କର ଚରଣରେ ଆକୃଷ୍ଟ ହୁଏ ଏବଂ ଯାହାର ଅଦ୍ଭୁତ ଲୀଳା କଥା—ଅସୀମ ଗୁଣର କଥା ଶ୍ରବଣରେ ହୃଦୟ ବିମୁଗ୍ଧ ହୋଇଯାଏ, ମୁଁ ତାଙ୍କୁହିଁ ରସମୟ ବିଗ୍ରହ ପୂର୍ଣ୍ଣ ପୂର୍ଣ୍ଣତମ ଭଗବାନ କୁହେ ।

ସାଧୁ—ଅଚ୍ଛା, ଯଦି କୌଣସି ଲମ୍ପଟ ପୁରୁଷ କୌଣସି ସୁନ୍ଦରୀ ଯୁବତୀ ଦର୍ଶନରେ ଆକୃଷ୍ଟ ହୁଏ, ତେବେ ତାହାକୁ କ'ଣ ଆପଣ ଈଶ୍ୱର ବୋଲି କହିବାକୁ ଚାହାନ୍ତି ?

ବଡ଼ବାବାଜୀ—ନା, ତା କଦାପି ନୁହେଁ, କାରଣ ସେଇ ସୁନ୍ଦରୀ ଯୁବତୀ ନିଜ ଇନ୍ଦ୍ରିୟବୃତ୍ତି ଚରିତାର୍ଥର ସାଧିକା ବୋଲି

ଲମ୍ପଟ ଯୁବକ ତାକୁ ଭଲ ପାଏ ଓ ତା ଦ୍ୱାରା ଆକୃଷ୍ଟ ହୋଇଥାଏ । ହଠାତ୍ ଯଦି କୌଣସି କାରଣ ବଶତଃ ତାର ସେହି ସୁନ୍ଦର ମୂର୍ତ୍ତି କଦାକାର ହୋଇଯାଏ, ତେବେ କ'ଣ ସେଇ ଯୁବକ ଆଉ ତାକୁ ଭଲ ପାଇବ ?

ସାଧୁ—ଏ କଥା ଠିକ୍, କାରଣ ସେ କେବଳ ରୂପ ଲୋଲୁପ କାମୁକ ପୁରୁଷ ! ରୂପ ଯୌବନର ଅଭାବ ହେଲେ ତତ୍ପ୍ରତି ଆକର୍ଷଣର ଅଭାବ ହେବ, ଏହା ତ ନିଶ୍ଚିତ ।

ବଡ଼ବାବାଜୀ—ତେବେ ଆପଣ ବୁଝନ୍ତୁ, କାମ ଓ ପ୍ରେମରେ କେତେ ପ୍ରଭେଦ ।

କାମ ରୂପଲାଳସା ସମ୍ଭୂତ, ରୂପର ଅଭାବରେ କାମର ଅସ୍ତିତ୍ୱ ରହେନା । ପ୍ରେମ କାମଠାରୁ ସମ୍ପୂର୍ଣ୍ଣ ଭିନ୍ନ ବସ୍ତୁ । ଏହା ନିର୍ମଳ, ରୂପଗୁଣର ଧାର ଧାରେନା । ଏପରିକି, ପ୍ରେମ ଲାଗି ପାତ୍ରର ଅଭାବ ହେଲେହେଁ ତା'ର ହ୍ରାସ ହୁଏନା, ବରଂ ବୃଦ୍ଧି ହୋଇଥାଏ । ବିରହରେ ପ୍ରେମର ଜ୍ୱଳନ୍ତ ବିକାଶ ଦୃଷ୍ଟହୁଏ । ଶ୍ରୀ ଗୌରାଙ୍ଗ ପ୍ରଭୁ ଯେ ପୂର୍ଣ୍ଣ ପୁର୍ଣ୍ଣତମ ସାକ୍ଷାତ୍ ବ୍ରଜେନ୍ଦ୍ର ନନ୍ଦନ, ଏ ବିଷୟରେ ବହୁ ପ୍ରମାଣ ଅଛି । ତନ୍ମଧ୍ୟରୁ ଦୁଇ ଗୋଟି ଆପଣଙ୍କୁ କହୁଛି ।

ବାସୁଦେବ ସାର୍ବଭୌମ କହୁଛନ୍ତି :—

କାଳାନ୍ନଷ୍ଟଂ ଭକ୍ତିଯୋଗଂ ନିଜଂ ଯଃ
ପ୍ରାଦୁଷ୍କର୍ତ୍ତୁଂ କୃଷ୍ଣ ଚୈତନ୍ୟ ନାମା ।
ଆବିର୍ଭୂତସ୍ତସ୍ୟ ପାଦାରବିନ୍ଦେ
ଗାଢ଼ଂ ଗାଢ଼ଂ ଲୀୟତାଂ ଚିତ୍ତଭୃଙ୍ଗଂ ।।

କଳି ପ୍ରଭାବରେ ନିଜ ଭକ୍ତି ଯୋଗ ବିନଷ୍ଟ ପ୍ରାୟ ଦେଖି ତାହାକୁ ପ୍ରକାଶ କରିବା ଲାଗି କୃଷ୍ଣ ଚୈତନ୍ୟ ନାମ ଧାରଣପୂର୍ବକ

ଯିଏ ଅବତୀର୍ଣ୍ଣ ହୋଇଛନ୍ତି, ମୋର ମନୋମତ୍ତ ମଧୁକର ତାଙ୍କର ପାଦପଦ୍ମରେ ଲୀନ ହେଉ ।

ସହସ୍ର ନାମ ସ୍ତୋତ୍ରରେ କହିଛନ୍ତି :—

ସୁବର୍ଣ୍ଣ ବର୍ଣ୍ଣୋ ହେମାଙ୍ଗୋ ବରାଙ୍ଗଃ ଚନ୍ଦନାଙ୍ଗଦୀ ।
ସନ୍ନ୍ୟାସ କୃଚ୍ଛମଃ ଶାନ୍ତୋ ନିଷ୍ଠାଶାନ୍ତି ପରାୟଣଃ ।।

ହେ ପ୍ରଭୁ ! ତୁମେ ସୁବର୍ଣ୍ଣ ବର୍ଣ୍ଣ ଅର୍ଥାତ୍ କୃଷ୍ଣରୂପ ବର୍ଣ୍ଣନା-କାରୀ, ଗୌରାଙ୍ଗ, ସୁନ୍ଦରକାନ୍ତି ଚନ୍ଦନବଳୟାଦିଭୂଷିତ, ସନ୍ନ୍ୟାସୀ, ଭଗବନ୍ନିଷ୍ଠ, ସୁଶୀଳ ଏବଂ ନିବୃତ୍ତି ଓ ଶାନ୍ତି ପରାୟଣ । ବିଶ୍ୱାସ ତନ୍ତ୍ର ଉତ୍ତର ଖଣ୍ଡରେ ଏକାଦଶ ପଟଳେ:—

ଗଙ୍ଗାୟା ଦକ୍ଷିଣେ ଭାଗେ ନବଦ୍ୱୀପେ ମନୋରମେ,
କଳି ପାପ ବିନାଶାୟ ଶଚୀ ଗର୍ଭେ ସନାତନ ।
ଜନିଷ୍ୟତି ପ୍ରିୟେ, ମିଶ୍ର ପୁରନ୍ଦର ଗୃହେ ସ୍ୱୟଂ,
ଫାଲ୍‌ଗୁନେ ପୌର୍ଣ୍ଣମାସାଞ୍ଚ ନିଶାୟାଂ ଗୌର ବିଗ୍ରହଃ ।।

ହେ ପ୍ରିୟେ, କଳିକଳୁଷ ବିନାଶ ନିମିତ୍ତ ଗଙ୍ଗାର ଦକ୍ଷିଣ ତୀରବର୍ତ୍ତୀ ଅତି ମନୋରମ ନବଦ୍ୱୀପ ଗ୍ରାମରେ ଫାଲ୍‌ଗୁନ ପୂର୍ଣ୍ଣିମା ନିଶିରେ ମିଶ୍ର ପୁରନ୍ଦର ଗୃହରେ ଶଚୀଦେବୀଙ୍କ ଗର୍ଭରେ ସ୍ୱୟଂ ଭଗବାନ ଗୌର ରୂପେ ଅବତୀର୍ଣ୍ଣ ହେବେ ।

ଜୈମିନି ଭାରତରେ :—

କଲୌ କୃଷ୍ଣାବତାରେଽପି ଗୂଢ଼ଃ ସନ୍ନ୍ୟାସ ରୂପ ଧୃକ୍ କୃଷ୍ଣାବତାର ହେଲେହେଁ କଳିଯୁଗରେ ପ୍ରଚ୍ଛନ୍ନ ଭାବରେ ଅବତୀର୍ଣ୍ଣ ହୋଇ ସନ୍ନ୍ୟାସ ଗ୍ରହଣ କରିବେ ।

ସୌର ପୁରାଣରେ :—

ସୁପୂଜିତ ସଦା ଗୌରଃ କୃଷ୍ଣୋ ବା ବେଦବିଦ୍ ଦ୍ୱିଜଃ ।

ଏହି କୃଷ୍ଣଚନ୍ଦ୍ର ହିଁ ବୈଦିକ ବ୍ରାହ୍ମଣ ହୋଇ ଗୌରାଙ୍ଗ ରୂପରେ ଜଗତରେ ପୂଜିତ ହେବେ ।

ବ୍ରହ୍ମ ପୁରାଣରେ :—

କଳେଃ ପ୍ରଥମ ସନ୍ଧ୍ୟାୟାଂ ଲକ୍ଷ୍ମୀକାନ୍ତୋ ଭବିଷ୍ୟତି ।
ଦାରୁବ୍ରହ୍ମ ସମୀପସ୍ଥଃ ସନ୍ନ୍ୟାସୀ ଗୌର ବିଗ୍ରହଃ ।।

ଲକ୍ଷ୍ମୀକାନ୍ତ ଭଗବାନ କଳିର ପ୍ରଥମ ସନ୍ଧ୍ୟାରେ ଗୌରବର୍ଣ୍ଣ ସନ୍ନ୍ୟାସୀ ରୂପ ଧାରଣ କରି ଦାରୁବ୍ରହ୍ମ ସମୀପସ୍ଥ ହେବେ ।

ପଦ୍ମ ପୁରାଣରେ :—

କଳେଃ ପ୍ରଥମ ସନ୍ଧ୍ୟାୟାଂ ଗୌରାଙ୍ଗୋ ହସୌ ମହୀତଳେ ।
ଭାଗୀରଥ୍ୟାସ୍ତଟେ ଭୂୟୋ ଭବିଷ୍ୟତି ସନାତନଃ ।।

ଏହି ସନାତନ ଶ୍ରୀକୃଷ୍ଣ କଳିର ପ୍ରଥମ ସନ୍ଧ୍ୟାରେ ଶ୍ରୀ ଗୌରାଙ୍ଗ ରୂପରେ ଭାଗୀରଥୀ ତୀରରେ ପୁନର୍ବାର ଅବତୀର୍ଣ୍ଣ ହେବେ ।

ଏହିପରି ବହୁ ଶାସ୍ତ୍ର ପ୍ରମାଣ ଦ୍ୱାରା ଶ୍ରୀ ଗୌରାଙ୍ଗ ଦେବଙ୍କର ପୂର୍ଣ୍ଣ ପୂର୍ଣ୍ଣତମତ୍ୱ ପ୍ରତିପନ୍ନ ହୋଇଅଛି ।

ସାଧୁଙ୍କର ନାନାପ୍ରକାର ବିଚାର ପରେ ଶ୍ରୀ ଗୌରାଙ୍ଗ ଅବତାରରେ ଦୃଢ଼ ବିଶ୍ୱାସ ଜନ୍ମିଲା । ଗୌର ଭକ୍ତଙ୍କର ସଙ୍ଗ ପ୍ରଭାବରେ ନବଜନ୍ମ ଲାଭ ହେଲା । ସାଧୁ ବଡ଼ବାବାଜୀ ମହାଶୟଙ୍କର ଚରଣ ତଳେ ନିପତିତ ହୋଇ କାନ୍ଦି କାନ୍ଦି କହିଲେ, "ଗୁରୁଦେବ ! ମୁଁ ଏତେ ସମୟ ଧରି ଆପଣଙ୍କର ସମୟ ବୃଥା ନଷ୍ଟ କଲି, ମୁଁ ଘୋର ନାସ୍ତିକ, ପାଷାଣ୍ଡ । ଆପଣଙ୍କୁ ଦର୍ଶନ କରି

ମୁଁ ପବିତ୍ର ହେଲି । ଆପଣ ମୋତେ କୃପା କରନ୍ତୁ, ମୁଁ ଯେପରି ପରମ ଦୟାଳୁ ନିତାଇ ଗୌରର ଦାସାନୁଦାସ ହୋଇପାରିବି । ଏହା ଭିନ୍ନ ମୋର ଆଉ କୌଣସି ଆଶା ନାହିଁ ।”

ବଡ଼ବାବାଜୀ ମହାଶୟ ପ୍ରେମାର୍ଦ୍ର ହୃଦୟରେ ସାଧୁଙ୍କୁ ପ୍ରେମାଲିଙ୍ଗନ ଦାନରେ କୃତାର୍ଥ କଲେ ଏବଂ ମଧୁର ବଚନରେ କହିଲେ, “ଭାଇ, ଧନ୍ୟ କଳିକାଳ, କଳିହତ ଜୀବର ପରମ ସୌଭାଗ୍ୟ । କଳିପାବନାବତାର ପରମ ଦୟାଳୁ ଶ୍ରୀ ଗୌରାଙ୍ଗ ସୁନ୍ଦର ତୁମକୁ ଅବଶ୍ୟ କୃପା କରିବେ । ଭୟ କ’ଣ ? ନିତାଇ ଚାନ୍ଦ ଯେ ମୋର ଅଦୋଷ ଦରଶୀ । ସେ ଯେ ଅଯାଚିତରେ ପ୍ରେମ ଧନ ଦାନ କରନ୍ତି । ତାଙ୍କର ପଦାଶ୍ରୟ ଗ୍ରହଣ କର ; ତୁମର ସକଳ ଦୁଃଖ ଦୂର ହେବ । ମନରେ ପରମ ଶାନ୍ତି ଲାଭ କରିବ ।” ବଡ଼ବାବାଜୀ ମହାଶୟଙ୍କର ଏହି କରୁଣା ପୂର୍ଣ୍ଣ ଆଶାପ୍ରଦ, ମଧୁର କଥା ଶୁଣି ସାଧୁଙ୍କର ପ୍ରାଣରେ ଅନୁତାପ ଅଗ୍ନି ଧୁ ଧୁ କରି ଜଳି ଉଠିଲା । ସେ ଉନ୍ମତ୍ତ ପ୍ରାୟ “ହା ନିତାଇ, ଜୟ ନିତାଇ” କହି ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗିଲେ । ତାଙ୍କ ଧୈର୍ଯ୍ୟର ବନ୍ଧ ଭାଙ୍ଗି ଗଲା । ସେ ଆଉ ସ୍ଥିର ହୋଇ ରହି ପାରିଲେ ନାହିଁ । ଅତି କଷ୍ଟରେ ସମସ୍ତ ରାତି ଜାଗି ରହିଲେ । ପ୍ରଭାତ ହେବାରୁ ସେ ମସ୍ତକ ମୁଣ୍ଡନ ପୂର୍ବକ ସ୍ନାନ କରି ବଡ଼ବାବାଜୀ ମହାଶୟଙ୍କର ଶ୍ରୀ ଚରଣରେ ଆତ୍ମ ସମର୍ପଣ କଲେ । ମନ୍ତ୍ର ଗ୍ରହଣ ନିମିତ୍ତ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରିବାରୁ ତାଙ୍କର କର୍ଣ୍ଣରେ ମନ୍ତ୍ର ପ୍ରଦାନ କଲେ । ଏହି ସାଧୁଙ୍କର ନାମ **କୃଷ୍ଣାନନ୍ଦ ଦାସ** । ସେ ବଡ଼ବାବାଜୀ ମହାଶୟଙ୍କର ଆଦେଶରେ ପୂଜ୍ୟପାଦ ପ୍ରେମାନନ୍ଦ ଭାରତୀ ମହାଶୟଙ୍କ ସଙ୍ଗେ ଆମେରିକା ଯାତ୍ରାପଥରେ ଦେହତ୍ୟାଗ କଲେ ।

# ଶ୍ରୀ ଶ୍ରୀ ମହାପ୍ରଭୁଙ୍କର ପାଦପଦ୍ମ ଚିହ୍ନ ସ୍ଥାନାନ୍ତରିତ କରଣ

କ୍ରମେ ବଡ଼ବାବାଜୀ ମହାଶୟଙ୍କ ଉପରେ ଶିକ୍ଷିତ ସମ୍ପ୍ରଦାୟର ଦୃଷ୍ଟି ପଡ଼ିଲା । ତତ୍‌କାଳୀନ ସ୍ଥାନୀୟ ମୁନସଫ୍‌ବାବୁ କଶୋରୀ ମୋହନ ସେନ୍, ଡେପୁଟି ମାଜିଷ୍ଟ୍ରେଟ୍ ବାବୁ ଜଗତ୍‌ଚନ୍ଦ୍ର ରାୟ ପ୍ରଭୃତି ଅନେକ ଭଦ୍ରଲୋକ ତାଙ୍କପ୍ରତି ବିଶେଷ ଆକୃଷ୍ଟ ହେଲେ । ତାଙ୍କୁ ଦିନେ ନ ଦେଖିଲେ ସେମାନେ ଅସ୍ଥିର ହୋଇ ପଡ଼ୁଥିଲେ ।

ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ଜଗମୋହନରେ ଗରୁଡ଼ସ୍ତମ୍ଭ ପଛରେ ଶ୍ରୀ ଗୌରାଙ୍ଗ ଦେବଙ୍କର ପାଦପଦ୍ମ ଚିହ୍ନ ଥିଲା । ପର୍ବ ପର୍ବାଣୀ ମାନଙ୍କରେ ବିଶେଷ ଜନଗହଳି ଯୋଗୁ ପାଦପଦ୍ମ ଉପରେ ଲୋକ ଚଳାଚଳ କରୁଥିବାରୁ ବଡ଼ବାବାଜୀ ମହାଶୟ ପୁରୀ ରାଜାଙ୍କୁ କହି ସେହି ପାଦପଦ୍ମ ଚିହ୍ନିତ ପ୍ରସ୍ତର ଖଣ୍ଡିକ ଉଠାଇ ନେଇ ଶ୍ରୀ ଜଗନ୍ନାଥ ଦେବଙ୍କ ମନ୍ଦିରର ଉତ୍ତର ଦ୍ୱାର ନିକଟରେ ଗୋଟିଏ ଛୋଟ ମନ୍ଦିର ନିର୍ମାଣ କରାଇ ସେହି ମନ୍ଦିର ମଧ୍ୟରେ ସ୍ଥାପନ କରାଇଲେ ।

ଗୋଟିଏ ଦଶ ଏଗାର ବର୍ଷର ବ୍ରାହ୍ମଣ ବାଳକକୁ ତା'ର ବଡ଼ଭାଇ ଆଣି ନରେନ୍ଦ୍ର ସରୋବର ନିକଟବର୍ତ୍ତୀ ରାମାନନ୍ଦୀ ମଠରେ ମହନ୍ତ କରାଇ ଦେଲେ । ଭଗବତ୍ ଇଚ୍ଛାରେ ଉକ୍ତ ମହନ୍ତ ବାଳକଟି ବଡ଼ ବାବାଜୀ ମହାଶୟଙ୍କର ଦର୍ଶନ ଲାଭକରି ତାଙ୍କ ପ୍ରେମରେ ବିମୁଗ୍ଧ ହୋଇ ତାଙ୍କର ଆନନ୍ଦମୟ ସଙ୍ଗସୁଖା- ଭିଳାଷୀ ହୋଇ ଦିବାରାତ୍ରି ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ନିକଟରେ

ପ୍ରାର୍ଥନା କରି କହିବାକୁ ଲାଗିଲେ ଯେ, "ହେ ମହାପ୍ରଭୁ, ମୋତେ ବିଷୟ ବନ୍ଧନରୁ ମୁକ୍ତ କର । ମୁଁ ଯେପରି ସଦାସର୍ବଦା ବଡ଼ବାବାଜୀ ମହାଶୟଙ୍କ ସଙ୍ଗରେ ଥାଏ । ଏହି ବାଳକଟିର ନାମ **ଶୀତଳ ଦାସ** । ଶ୍ରୀ ଶ୍ରୀ ଜଗନ୍ନାଥ ଦେବ ଏହି ଭକ୍ତ ବାଳକ ପ୍ରତି ପ୍ରସନ୍ନ ହୋଇ ତାକୁ ବିଷୟ ବନ୍ଧନରୁ ମୁକ୍ତ କରିବାକୁ ଇଚ୍ଛା କଲେ ।

ହଠାତ୍ ଦିନେ କେତେଜଣ ରାମାନନ୍ଦୀ ବାବାଜୀ ଆସି ଶୀତଳ ଦାସ ଓ ତାଙ୍କର ଜ୍ୟେଷ୍ଠ ଭ୍ରାତାଙ୍କୁ ମଠରୁ ବିତାଡ଼ିତ କରି ଦେଲେ । ଫଳରେ ମୋକଦ୍ଦମା ଆରମ୍ଭ ହୋଇଗଲା । ବାଳକ କିନ୍ତୁ ପ୍ରତିଦିନ ଶ୍ରୀଚରଣ ତଳେ ଜଣାଉଛି ଯେ ତାର ଯେପରି ବିଷୟ ଭୋଗ ସମ୍ପୂର୍ଣ୍ଣ ଭାବେ ନିବୃତ୍ତ ହୋଇଯାଏ । ବଡ଼ବାବାଜୀ ମହାଶୟଙ୍କର ପ୍ରିୟ ସହଚର ମୁନସଫ୍ କଣୋଇବାବୁଙ୍କ କଚେରୀରେ ଏହି ମୋକଦ୍ଦମାର ବିଚାର ଚାଲିଲା । ସେ ମନେ ମନେ ଠିକ୍ କରିଥିଲେ ଯେ ଏହି ମୋକଦ୍ଦମାରେ ବାଳକର ନିଶ୍ଚୟ ଜୟ ହେବ । କାରଣ ସାକ୍ଷୀ ପ୍ରମାଣ ବାଳକ ପକ୍ଷରେ ବିଶେଷ ଅନୁକୂଳ । ସାକ୍ଷ୍ୟ ଗ୍ରହଣ ଏବଂ ବିଚାର ଆଦି ସବୁ ଶେଷ ହୋଇ ଯାଇଛି । କେବଳ ରାୟ ଲେଖା ବାକିଅଛି । ମୁନ୍‌ସଫ୍‌ବାବୁ ପରମ ଭକ୍ତ । ସେ ଯେତେବେଳେ କୌଣସି ମୋକଦ୍ଦମାର ରାୟ ଲେଖି ବସନ୍ତି, ସେତେବେଳେ ପ୍ରାୟ ଦଶ, ପନ୍ଦର ମିନିଟ୍ ଚକ୍ଷୁ ମୁଦ୍ରିତ କରି ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ଚରଣ ଧ୍ୟାନ କରନ୍ତି ଏବଂ ତାଙ୍କୁ ବିଶେଷ ଭାବରେ ସମସ୍ତ ଘଟଣା ଜଣାଇ ତାଙ୍କର ଆଜ୍ଞାମତେ ରାୟ ଲେଖନ୍ତି । ଏ କ୍ଷେତ୍ରରେ ସେ ଠିକ୍ ସେଇଆ କଲେ । ରାୟ ଲେଖା ହୋଇଗଲା । କିନ୍ତୁ ସେ ପଢ଼ି ଦେଖନ୍ତି ଯେ, ରାୟ ତାଙ୍କର ମନଭାବର ଠିକ୍ ବିପରୀତ ହୋଇଛି ।

ବାଳକ ମୋକଦ୍ଦମାରେ ହାରି ଯାଇଛି । ଏଥିରେ ମୁନ୍‌ସଫ୍‌ବାବୁ ଲଜ୍ଜିତ ହେଲେ । କଚେରୀରୁ ଫେରି ସେ ବିଷର୍ଣ୍ଣ ମୁଖରେ ବଡ଼ ବାବାଜୀ ମହାଶୟଙ୍କ ନିକଟକୁ ଆସିଲେ । ତାଙ୍କର ଏପରି ମ୍ଳାନ ମୁଖ ଦେଖି ବଡ଼ବାବାଜୀ ମହାଶୟ ଜିଜ୍ଞାସା କଲେ, "କିଶୋରୀ ! ତୁମର ମୁହଁ ଶୁଖି ଯାଇଛି କାହିଁକି ? ତୁମେ ଯେପରି ବଡ଼ ସନ୍ତପ୍ତ !" କିଶୋରୀବାବୁ କହିଲେ, "ଆଜ୍ଞା, ମୋର ଆଜି ଗୋଟିଏ ଧାରଣାର ଅଜ୍ଞାତ କାର୍ଯ୍ୟ ହୋଇଯାଇଛି । ମୁଁ ପ୍ରଥମରେ ଠିକ୍‌କରି ନେଇଥିଲି ଯେ ଏହି ମୋକଦ୍ଦମାରେ ବାଳକକୁ ଜିତାଇବି, କିନ୍ତୁ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କୁ ଜଣାଇ ରାୟ ଲେଖିବା ପରେ ଦେଖିଲି ଯେ ସେ ହାରିଯାଇଛି । ସେଇ ହେତୁ ଭାବୁଥିଲି ବୋଧହୁଏ, ମୁଁ ଅନ୍ୟାୟ କରିଛି । ବଡ଼ ବାବାଜୀ ମହାଶୟ କହିଲେ, "ବାବା, ଜଗନ୍ନାଥଙ୍କ କୃପାରୁ ଉଚିତ୍ ବିଚାର ହୋଇଛି, କାରଣ ଏହି ବାଳକ ଏହି ମୋକଦ୍ଦମା ହେବା ପୂର୍ବରୁ ପ୍ରତିଦିନ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କୁ ଜଣାଉଥିଲା ଯେ, "ହେ ପ୍ରଭୁ, ମୋର ଏ ମଠର ମହନ୍ତଗିରି ଦରକାର ନାହିଁ, ମୁଁ ନିର୍ବିଘ୍ନ ହୋଇ ନିରୁଦ୍‌ବେଗରେ ଯେପରି ଏହି ବାବାଜୀଙ୍କ ସଙ୍ଗରେ ରହିବି ।" ଭକ୍ତ ବତ୍ସଳ ଶ୍ରୀ ଶ୍ରୀ ଜଗନ୍ନାଥ ଦେବ ବାଳକର ପ୍ରାର୍ଥନା ପୂର୍ଣ୍ଣ କରିଛନ୍ତି, ଏଥିରେ ତୁମର ଦୋଷ କ'ଣ ବାବା ?

ଇତ୍ୟବସରରେ ଶୀତଳ ଦାସକୁ ଫେରି ନିବାକୁ ତା'ର ପିତା, ମାତା, ଭ୍ରାତା ଓ ଆତ୍ମୀୟ ସ୍ୱଜନ ସମସ୍ତେ ବିଶେଷ ଚେଷ୍ଟା କରିବାକୁ ଲାଗିଲେ ।

ତା'ର ଭ୍ରାତା ବାଳକଟିକୁ ଧରିବାକୁ ଯିବାମାତ୍ରେ ସେ ଚିତ୍କାର କରିକରି ଦୌଡ଼ି ବଡ଼ ବାବାଜୀ ମହାଶୟଙ୍କ ନିକଟକୁ

ଆସି ପିତା ମାତାଙ୍କୁ ଲକ୍ଷ୍ୟକରି କହିଲେ, "ଦେଖ, ତୁମ୍ଭେମାନେ ମୋ ଆଶା ପରିତ୍ୟାଗ କରି ମୋତେ ମହନ୍ତ କରି ଦେଇଥିଲ । ଯଦି ମୁଁ ମହନ୍ତ ହୋଇଥାଆନ୍ତି, ତେବେ କ'ଣ ତୁମ୍ଭେମାନେ ମୋତେ ଘରକୁ ନେଇଯାଇ ପାରିଥାଆନ୍ତ ? ଅତଏବ ତୁମ୍ଭେମାନେ ମୋ ଆଶା ତ୍ୟାଗ କରିବା ଉଚିତ୍ । ବର୍ତ୍ତମାନ ମୁଁ ଆଉ ତୁମ୍ଭ ମାନଙ୍କର ନୁହେଁ । ତୁମ୍ଭେମାନେ ମୋର ଗୁରୁଜନ ତୁମ୍ଭମାନଙ୍କ କୃପାରୁ ମୋର ସଂସାର ବନ୍ଧନ ମୋଚନ ହୋଇଛି । ବର୍ତ୍ତମାନ ଆଶୀର୍ବାଦ କରନ୍ତୁ, ଯେପରି ମୁଁ ନିର୍ବିଘ୍ନରେ ବାବାଜୀ ମହା-ଶୟଙ୍କର ସମ୍ପ୍ରଦାୟରେ ରହି ଭଜନ କରିପାରେ ।" ଏହିପରି ଅନେକ ପ୍ରବୋଧ ବାକ୍ୟରେ ସେ ପିତାମାତାଙ୍କୁ ବୁଝାଇବାକୁ ଲାଗିଲେ । ସମସ୍ତେ ବାଳକ ମୁଖରୁ ଏପରି ବୈରାଗ୍ୟ ପୂର୍ଣ୍ଣ କଥା ଶୁଣି ବିସ୍ମିତ ହୋଇଗଲେ । ଅଗତ୍ୟା ବାଳକର ପିତାମାତା ତାର ହାତ ଧରି ନେଇ ବଡବାବାଜୀ ମହାଶୟଙ୍କର ହାତରେ ସମର୍ପଣ ପୂର୍ବକ ଦୁଃଖିତ ହୃଦୟରେ ନିଜ ଗୃହକୁ ଫେରିଗଲେ । ବାଳକ ମନରେ ଆନନ୍ଦର ସୀମାନାହିଁ । ଆଜିଠାରୁ ତାର ସକଳ ଚିନ୍ତା ଦୂର ହୋଇଛି । ବଡ଼ବାବାଜୀ ମହାଶୟ ଶ୍ରୀମନ୍ ମହାପ୍ରଭୁଙ୍କର ପାଦପଦ୍ମ ସେବାରେ ଏହି ଶୀତଳ ଦାସକୁ ନିଯୁକ୍ତ କରିଦେଲେ ।

ବଡ଼ବାବାଜୀ ମହାଶୟ ଦିନେ ପୂର୍ବୋକ୍ତ ଗୌର ଚରଣ ଚକ୍ରବର୍ତ୍ତୀଙ୍କୁ ନାରାୟଣ ଛତାର କର୍ତ୍ତା ବାବାଜୀ ମହାଶୟଙ୍କ ନିକଟରୁ ଭେକ ଗ୍ରହଣ କରିବାକୁ ଆଦେଶ କଲେ । ଗୌର ଚରଣ ଅନେକ ଆପତ୍ତି ପରେ ଅଗତ୍ୟା ବଡ଼ବାବାଜୀ ମହାଶୟଙ୍କର ଆଦେଶ ପାଳନ କଲେ । ତାଙ୍କର ଭେକର ନାମ ହେଲା **ଗୋବିନ୍ଦ ଦାସ** । ଏହିପରି ଜଣ ଜଣ ହୋଇ କ୍ରମେ କ୍ରମେ ବହୁ ସଙ୍ଗୀ ଆସି ଏକତ୍ରିତ ହେଲେ ।

# ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ସ୍ନାନଯାତ୍ରା

ଆଜ ଶ୍ରୀ ଶ୍ରୀ ଜଗନ୍ନାଥଦେବଙ୍କର ସ୍ନାନ ଯାତ୍ରା । ପ୍ରାତଃ ସମୟରେ ଏହି ଉତ୍ସବ ଉପଲକ୍ଷେ ନାନାବିଧ ଆୟୋଜନ ଚାଲିଛି । ସ୍ନାନ ବେଦୀ ଉପରେ ନାନା ବର୍ଣ୍ଣର ଚନ୍ଦ୍ରାତପ ସୁସଜ୍ଜିତ ହୋଇଛି । ବଡ଼ବାବାଙ୍କ ମହାଶୟ ସଙ୍ଗୀମାନଙ୍କ ସହିତ କରତାଳ ଓ ଖୋଳ ସହଯୋଗରେ ମଧୁର କୀର୍ତ୍ତନ କରୁଛନ୍ତି । ବହୁ ଲୋକଙ୍କର ସମାଗମ ହୋଇଛି । ସମସ୍ତେ ଆନନ୍ଦରେ ଉନ୍ମତ୍ତ । ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ପହଣ୍ଡି ବିଜୟ ପରେ ସ୍ନାନ ବେଦୀ ଉପରେ ଉପବେଶନ କରନ୍ତେ ଦଇତା ପଣ୍ଡାମାନେ ତାଙ୍କୁ ସ୍ନାନ କରାଇବାକୁ ଆରମ୍ଭ କଲେ । କି ମଧୁର ସେ ଦୃଶ୍ୟ । କି ମନୋହାରିଣୀ ଶୋଭା ! ଚତୁର୍ଦ୍ଦିଗରେ ବହୁବିଧ ବାଦ୍ୟଯନ୍ତ୍ର ବାଜୁଛି । ଜୟ ଧ୍ୱନି, ଶଙ୍ଖ ଧ୍ୱନି, ହୁଳହୁଳି ଧ୍ୱନିରେ ଦଶ ଦିଗ ମୁଖରିତ । ଏହି ସମୟରେ ବଡ଼ବାବାଜୀ ମହାଶୟ ଶ୍ରୀଶ୍ରୀ ଜଗନ୍ନାଥ ଦେବଙ୍କର ଶ୍ରୀମୁଖ ଚନ୍ଦ୍ର ଅବଲୋକନ କରି ଭାବାବେଶରେ ପଦ କୀର୍ତ୍ତନ ଧରିଲେ—

"ନାଚେରେ ଗୌରାଙ୍ଗ ହରି ଭକ୍ତଗଣ ସାଥ ।
ସିନାନ ମଣ୍ଡପେ ହେରି ଶ୍ରୀଲ ଜଗନ୍ନାଥ ।।
ପୂରବେର ଭାବେ ନାଚେ ଶ୍ରୀ ଶଚୀନନ୍ଦନ ।
ଜଗନ୍ନାଥେ ଦେଖେ ଯେନ ବ୍ରଜେନ୍ଦ୍ର ନନ୍ଦନ ।।
ବୃନ୍ଦାବନ ମାଝେ ଯେନ ଦେଖା ପୌର୍ଣ୍ଣ-ମାସୀ ।
ଅଭିଷେକ କରିଛେନ ପରମ ହରଷି ।।

ସ୍ୱରୂପରେ ବଲେ ଗୋରା ହାସିୟା ହାସିୟା ।
ହେରଗୋ ଲଳିତା ତୋମାର ପରାନ ବଁଧୁୟା ॥

ଭାବେର ତରଙ୍ଗେ ଗୋରା ଅଧୀର ହଇଲ ।
ମାତିୟା ରାଧାର ଭାବେ ନାଚିତେ ଲାଗିଲ ॥

କେହ ନାଚେ କେହ ଗାଏ ବିଭୋର ହଇଆ ।
ଭୂମେ ଗଡ଼ିଯାଏ କେହ ପ୍ରେମାବିଷ୍ଟ ହଇଆ ॥

କୀର୍ତ୍ତନ ଶୁଣି ସମସ୍ତେ ଆନନ୍ଦ-ସାଗରରେ ନିମଗ୍ନ । କ୍ରମେ ଦିନ ଗଡ଼ିଗଲା । ପ୍ରେମାନନ୍ଦରେ କାହାରି ସଜ୍ଞା ନାହିଁ । ସମସ୍ତେ ଦାଦାଙ୍କର ମୁଖାପେକ୍ଷୀ । ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ଶ୍ରୀମୁଖକୁ ଚାହିଁ ଚାହିଁ ଚକ୍ଷୁ ଜଳରେ ବଡ଼ବାବାଜୀ ମହାଶୟଙ୍କର ମୁଖ ମଣ୍ଡଳ ବକ୍ଷସ୍ଥଳ ଭାସିଯାଉଛି । ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କୁ ଲକ୍ଷ୍ୟ କରି କେତେ କ'ଣ କହି ଯାଉଛନ୍ତି । କେତେବେଳେ ଅଭିମାନ, କେତେବେଳେ ଦୈନ୍ୟ, କେତେବେଳେ ବା ଆକ୍ଷେପ କରି କେତେ ପଦ ଗାଇ ଯାଉଛନ୍ତି । ସେ ସମସ୍ତ ପଦାବଳୀର ଭାବ ବା କି ଅପୂର୍ବ ! ଦର୍ଶକ ବୃନ୍ଦ କାହାକୁ ଦେଖିବେ ? ଜଗନ୍ନାଥ ଦେବଙ୍କୁ ନା ବଡ଼ବାବାଜୀ ମହାଶୟଙ୍କୁ ? ଦୁଇଜଣ ସମାନ ଚିତ୍ତାକର୍ଷକ, ଦୁଇଜଣ ହିଁ ସମଭାବରେ ସମସ୍ତଙ୍କର ମନପ୍ରାଣ ହରଣ କରୁଛନ୍ତି । କିଛିକ୍ଷଣ ପରେ ଭକ୍ତମାନଙ୍କର ଆଗ୍ରହରେ ଅଗତ୍ୟା କୀର୍ତ୍ତନ ସମାପ୍ତି କରିବାକୁ ବାଧ୍ୟ ହେଲେ । ମହାପ୍ରସାଦ ଆସି ଉପସ୍ଥିତ ହେବାରୁ ସେହି ସ୍ନାନବେଦୀ ଉପରେ ପଙ୍ଗତ ଆରମ୍ଭ ହେଲା । କି ଆନନ୍ଦ ! ଆନନ୍ଦ ଘନ ଲୀଳାମୟ ବିଗ୍ରହ ପ୍ରଭୁ ମୋର, ଯେତେବେଳେ ଯେଉଁ ଲୀଳା କରୁଛନ୍ତି, ସେଥିରେ ଯେପରି ଆନନ୍ଦର ସୁଅ ଛୁଟି ଚାଲିଛି । କିଏ ବା କାହା ମୁହଁରେ ପ୍ରସାଦ ଖୁଆଇ ଦେଉଛି, କେହି ବା

କାହାର ମୁହଁରୁ ପ୍ରସାଦ କାଢ଼ିଆଣି ଖାଇଦେଉଛ୍ଟି । ସମସ୍ତେ ଯେପରି ବାଲ୍ୟଭାବ ପ୍ରାପ୍ତ ହୋଇଛନ୍ତି । କାହାର ମନ ମଧ୍ୟରେ କୌଣସି ପ୍ରକାର ବିକାର ନାହିଁ । ପିତା, ପୁତ୍ର ଏକ ସଙ୍ଗେ ବସି ଆନନ୍ଦ କରୁଛନ୍ତି । ଜାତି ବିଚାର ଆଦୌ ନାହିଁ । ସମସ୍ତଙ୍କର ମନ ନିର୍ବିକାର । ଯଥା ସମୟରେ ଶ୍ରୀ ଶ୍ରୀ ଜଗନ୍ନାଥ ଦେବ ଶ୍ରୀମନ୍ଦିରରେ ପ୍ରବେଶ କଲେ । ଆଜଠାରୁ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ମଣି କୋଠାର ଦ୍ୱାର ବନ୍ଦ ହେଲା, ଆଉ ଦର୍ଶନ ନାହିଁ । ଏଇ ଦର୍ଶନ ଅଭାବର ନାମାନ୍ତର ଅନାବସର ବା ଅଣସର ।

## ଆଲାଲନାଥ ଯାତ୍ରା

ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ଅଣବସର ସମୟରେ ସମସ୍ତଙ୍କର ମନ ମଳିନ । ସମସ୍ତେ ନୀଳାଚଳ ନାଥଙ୍କର ବିରହରେ କାତର । ସାଧୁ ବୈଷ୍ଣବଗଣ ବ୍ୟାକୁଳ ମନରେ ଶ୍ରୀଧାମ ତ୍ୟାଗକରି ଅନ୍ୟତ୍ର ଯିବାକୁ ମନସ୍ଥ କଲେ । ଶ୍ରୀମନ୍ ମହାପ୍ରଭୁ ଏହି ସମୟରେ ଆଲାଲ୍ ନାଥ ଯାଇଥାଆନ୍ତି, ତେଣୁ ଭକ୍ତ ବୃନ୍ଦ ତାଙ୍କର ଅନୁକରଣ କଲେ । ବହୁ ଲୋକ ଏକତ୍ରିତ ହୋଇ ଖୋଳ କରତାଳ ଯୋଗେ କୀର୍ତ୍ତନ କରି କରି ଆଲାଲ୍ ନାଥ ଯାତ୍ରା କଲେ । ଏହି କାର୍ଯ୍ୟର ପ୍ରଧାନ ଉଦ୍ୟୋଗୀ ଅର୍ଜୁନ ସାନ୍ତ୍ରା । କାରଣ ତାର ନିଜ ଘର ଆଲାଲ ନାଥ ଯିବା ବାଟରେ । ତାଙ୍କର ଆନ୍ତରିକ ଅଭିଳାଷ ଯେ ଥରେ ସେମାନଙ୍କୁ ଶିରୁଳୀ ମହାବୀର ଦର୍ଶନ କରାଇ ଗୋଟିଏ ରାତି ନିଜ ଘରେ ରଖି ତା' ପରଦିନ ଆଲାଲନାଥ ଯାତ୍ରା କରିବେ । ବଡ଼ବାବାଜୀ ମହାଶୟଙ୍କର ନିକଟରେ ଏହି ପ୍ରସ୍ତାବ ଉତ୍ଥାପନ କରିବାରୁ ସେ ସମ୍ମତ ହେଲେ । ଶିରୁଳୀ ମହାବୀର ଦର୍ଶନ

କଣସାଣ ଭକ୍ତ ପ୍ରବର ଅର୍ଜ୍ଜୁନ ସାନ୍ତରାଙ୍କ ଘରେ ଗୋଟିଏ ରାତି କଟାଇ ପରଦିନ ସକାଳେ ସମସ୍ତେ ଆଲାଲ ନାଥ ଯାତ୍ରା କଲେ । ଆନନ୍ଦର ସୀମା ନାହିଁ । ବଡ଼ବାବାଜୀ ମହାଶୟ କୀର୍ତ୍ତନର ଦୁଆ ଧରିଲେ:—

"ଜଗନ୍ନାଥେର ଅଦର୍ଶନେ ଗୌରାଙ୍ଗ ଶ୍ରୀହରି ।
ଚଲିଲେନ ଆଲାଲନାଥେ କ୍ଷେତ୍ର ପରିହରି ॥

ଭକ୍ତଗଣ ସବେ ଚଲେ ଗୌରାଙ୍ଗେର ସଙ୍ଗେ ।
ଡୁବିଲେନ ଗୋରାଚାନ୍ଦ ଭାବେର ତରଙ୍ଗେ ॥

ଭାବନିଧି ଗୋରାର ମନେ କତ ଭାବ ଉଠେ ।
କଭୁ ଧୀରେ ଯାଏ କଭୁ ଦ୍ରୁତ ଗତି ଛୁଟେ ॥

ଚରଣେ ଚରନ ପ୍ରଭୁ ନେଚେ ନେଚେ ଚଲେ ।
ଦୁ' ବାହୁ ତୁଲିଆ କେବଲ ହରିବୋଲ ବଲେ ॥

ଇତ୍ୟାଦି ସୁମଧୁର ପଦ ଗାନ କରି କରି ସମସ୍ତେ ଆଲାଲ-ନାଥଙ୍କର ଶ୍ରୀମନ୍ଦିରରେ ପ୍ରବେଶ କଲେ । କୀର୍ତ୍ତନ ଧ୍ୱନି ଶୁଣି ଗ୍ରାମବାସୀ ଏକତ୍ରିତ ହେଲେ । ଶ୍ରୀମନ୍ଦିରର ସମ୍ମୁଖରେ କିଛି ସମୟ ପାଇଁ ଉଦ୍ଦଣ୍ଡ ନୃତ୍ୟ ଏବଂ କୀର୍ତ୍ତନ କରି ସମସ୍ତେ ବିଶ୍ରାମ କଲେ । କେହି ଜଣେ ସୌଭାଗ୍ୟବାନ୍ ଭକ୍ତ ସେଦିନ ଆଲାଲନାଥଙ୍କ ନିକଟରେ ଭୋଗର ବ୍ୟବସ୍ଥା କରିଥିଲେ । ଏହି ସ୍ଥାନରେ ପ୍ରସିଦ୍ଧ ଭୋଗ, ଅନ୍ନ ଓ ପାୟସ୍ । ଠାକୁରଙ୍କର ଏପରି ସୁନ୍ଦର ଅନ୍ନ ଓ ପାୟସ୍ ଭୋଗ ଆଉ କେଉଁଠି ହୁଏ କି ନା ସନ୍ଦେହ । କିନ୍ତୁ ଠାକୁରଙ୍କ ଭୋଗରେ ଉତ୍ତପ୍ତ ଅନ୍ନ, ପାୟସ୍ ଦେବା ନିୟମ । ଯିଏ ଆଜି ଭୋଗ ଦେଇଛନ୍ତି, ତାଙ୍କର ବଡ଼ ଇଚ୍ଛା ଯେ, ସମସ୍ତେ ପ୍ରାଣ

ଭର ଅନ୍ନ, ପାୟସ୍ ପ୍ରସାଦ ଗ୍ରହଣ କରନ୍ତୁ । ଠାକୁରଙ୍କ ଭୋଗ ପରେ ସମସ୍ତେ ପ୍ରସାଦ ପାଇବାକୁ ବସିଗଲେ । କିନ୍ତୁ ଶୁଭ କାର୍ଯ୍ୟରେ ବହୁ ବିଘ୍ନ । ଯେପରି ଉତ୍ତପ୍ତ ପାୟସାନ୍ନ ଭକ୍ତମାନଙ୍କର ପତ୍ରରେ ଲଗି ଯାଇଛି; ଆକାଶ ନିର୍ମଳ ଥିଲେ ମଧ୍ୟ ହଠାତ୍ ଭୟାନକ ବୃଷ୍ଟି ଆରମ୍ଭ ହୋଇଗଲା । ବୈଷ୍ଣବ ଗଣ କୌଣସି ପ୍ରକାରେ ସେଇ ଉତ୍ତପ୍ତ ପାୟସାନ୍ନ ପ୍ରସାଦକୁ ଗ୍ରହଣ କରିନେଲେ । କେହି କେହି ବୃଷ୍ଟି ଜଳରେ ଉତ୍ତପ୍ତ ପ୍ରସାଦକୁ ଶୀତଳ କରି ପାଇବାକୁ ଲଗିଲେ । ଅପୂର୍ବ ଆନନ୍ଦ ! ପ୍ରସାଦ ସେବନ ପରେ ସମସ୍ତେ ଉଦ୍ଦଣ୍ଡ ନୃତ୍ୟ କରିବାକୁ ଲଗିଲେ । କି ମଧୁର ସେ ଦୃଶ୍ୟ ! ଯେଉଁମାନେ ବୃଷ୍ଟି ଜଳରେ ଭିଜିଯିବା ଆଶଙ୍କାରେ ଠାକୁରଙ୍କର ଜଗମୋହନରେ ଏବଂ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଆଶ୍ରୟ ନେଇଥିଲେ, ସେମାନେ ଏହି ଅତୁଳ ଆନନ୍ଦ ସ୍ରୋତରେ ଭାସିଗଲେ ଏବଂ କ୍ରମେ କ୍ରମେ ନୃତ୍ୟ କୀର୍ତ୍ତନରେ ଆସି ଅଂଶଗ୍ରହଣ କଲେ । ବର୍ତ୍ତମାନ ସମସ୍ତେ ଏକାକାର, ବୃଷ୍ଟି ବନ୍ଦ ହୋଇଗଲା । କୀର୍ତ୍ତନ କ୍ଳାନ୍ତ ବୈଷ୍ଣବ ବାବାଜୀ ଗଣଙ୍କର ଶରୀରରେ ଘର୍ମ ବୃଷ୍ଟି ହେଲା । ଶୁଷ୍କ ବସ୍ତ୍ର ପୁନର୍ବାର ସିକ୍ତ ହେଲା, ସମସ୍ତଙ୍କ ମୁଖରେ କେବଳ ଏକମାତ୍ର ପଦ "ଗୌରହରି ବୋଲ" କାହାର ଶରୀର ପ୍ରତି ଲକ୍ଷ୍ୟ ନାହିଁ । ସନ୍ଧ୍ୟା ହୋଇଯିବାରୁ ଜଣେ ଭକ୍ତ ଆସି କହିଲେ, "ଆରତି ହେବ, ଚାଲନ୍ତୁ ଦର୍ଶନ କରିବେ ।" ପ୍ରେମୋନ୍ମତ୍ତ ବାବାଜୀଗଣ କିନ୍ତୁ ଭକ୍ତର ଭାଷା ବୁଝିପାରିଲେ ନାହିଁ, କେବଳ "ଆରତି ହେବ" ଏତିକ ମାତ୍ର ବୁଝିଲେ । ସେତେବେଳେ ଯିଏ ଯେଉଁ ଅବସ୍ଥାରେ ଥିଲେ, ସେଇ ଅବସ୍ଥାରେ ଯାଇଁ ଠାକୁରଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ସମସ୍ତଙ୍କର ଶରୀର ଓ ବସ୍ତ୍ର କର୍ଦ୍ଦମାକ୍ତ । ଉପସ୍ଥିତ ଗ୍ରାମବାସୀ ଏହାକୁ

ଦେଖି ଆବାକ୍ । ଏମାନଙ୍କ ପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷିତ ହେଲା । କେହି କେହି କହିଲେ, ଏମାନେ ପାଗଳ ହୋଇ ଯାଇଛନ୍ତି ।" କେହି କହିଲେ, "ଏପରି ମତ୍ତ । ଚୁଙ୍କୁ ତ ଆଗରୁ କେହି କେବେହେଁ ଦେଖିନାହିଁ ।" ବଡ଼ବାବାଜୀ ମହାଶୟଙ୍କୁ ସମସ୍ତେ ଚିହ୍ନିନେଲେ, ସେ ଯେଉଁଠାକୁ ଯାଆନ୍ତି ନା କାହିଁକି, ସମସ୍ତେ ତାଙ୍କୁ "ବଡ଼ବାବାଜୀ ମହାପ୍ରଭୁ" ବୋଲି ସମ୍ବୋଧନ କଲେ । ଯଥା ସମୟରେ ଆରତି ଶେଷ ହେବାରୁ ବାବାଜୀଗଣ ଆରତି କୀର୍ତ୍ତନ ଆରମ୍ଭ କଲେ । ରାତି ଦେଢ଼ ପ୍ରହର ପର୍ଯ୍ୟନ୍ତ କୀର୍ତ୍ତନ କରି ସମସ୍ତେ ବିଶ୍ରାମ କଲେ । ଜନୈକ ଭକ୍ତ ଠାକୁରଙ୍କ ଭୋଗ ଲାଗି କଣ୍ଟି କାକରା ପିଠାର ବ୍ୟବସ୍ଥା କରିଥିଲେ । ଭୋଗ ପରେ ମହାପ୍ରସାଦ ପାଇ ସେହିଠାରେ ପରମ ଆନନ୍ଦରେ ରାତି ଯାପନ ପୂର୍ବକ ପ୍ରଭାତରେ ଉଠି ସମସ୍ତ ପ୍ରଭାତି—କୀର୍ତ୍ତନ କରିବାକୁ ଲାଗିଲେ ।

## ନଗର କୀର୍ତ୍ତନ ଓ ମହୋତ୍ସବ

ସୂର୍ଯ୍ୟୋଦୟ ହେବାମାତ୍ରେ ବଡ଼ବାବାଜୀ ମହାଶୟ ବହୁ ଲୋକଙ୍କୁ ସଙ୍ଗରେ ନେଇ ନଗର କୀର୍ତ୍ତନରେ ବାହାରିପଡ଼ିଲେ । ସମସ୍ତେ ପ୍ରେମାନନ୍ଦରେ ଉନ୍ମତ୍ତ । ଗନ୍ତବ୍ୟ ସ୍ଥାନରେ ସ୍ଥିରତା ନାହିଁ, ଗ୍ରାମରୁ ଗ୍ରାମ ଚାଲିବାକୁ ଲାଗିଲେ । ଗ୍ରାମବାସୀ, ଆବାଳ ବୃଦ୍ଧବନିତା ମନ୍ତ୍ର ମୁଗ୍ଧ ବତ୍ ସଂକୀର୍ତ୍ତନ ସଙ୍ଗେ ସଙ୍ଗେ ଚାଲିଛନ୍ତି । ସମସ୍ତଙ୍କ ମୁଖରେ ଏକମାତ୍ର ଧ୍ୱନି **"ଗୌରହରି ବୋଲ ।"** ଅପୂର୍ବ ଦୃଶ୍ୟ ! କ୍ରମେ ବେଳା ଦ୍ୱିତୀୟ ପ୍ରହର ହେଲା । କୌଣସି ଏକ ଗ୍ରାମର ଜନୈକ ପରିଣତ ବୟସ୍କ ଭଦ୍ରଲୋକ ଆସି ବଡ଼-ବାବାଜୀ ମହାଶୟଙ୍କର ଜଣେ ସଙ୍ଗୀଙ୍କୁ ଧୀରେ ଧୀରେ କହିଲେ,

"ବେଳ ଆସି ଅଧିକ ହୋଇଗଲାଣି, ଆଜ ଅନୁଗ୍ରହ ପୂର୍ବକ ଆମ୍ଭର ଏହି ଭାଗବତ ଗୃହରେ ଆପଣମାନେ ବିଶ୍ରାମ କରି ଆମ୍ଭଙ୍କୁ କୃତାର୍ଥ କରନ୍ତୁ ।" ଏଇ କଥା ବଡ଼ବାବାଜୀ ମହାଶୟଙ୍କୁ ଜଣାଇବାରୁ ସେ ପ୍ରସନ୍ନ ଚିତ୍ତରେ ସମ୍ମତି ପ୍ରଦାନ କଲେ । କ୍ରମେ ଭୋଗର ଦ୍ରବ୍ୟ ସମ୍ଭାର ଆସିବାକୁ ଲାଗିଲା । ସମସ୍ତେ କୀର୍ତ୍ତନ ଶ୍ରାନ୍ତ ହୋଇ ଭାଗବତ ଗୃହରେ ବିଶ୍ରାମ କଲେ । ଏଣେ ଶ୍ରୀକ୍ଷେତ୍ର ବାସୀ ଦୁଇ ଜଣମୂର୍ତ୍ତି ବାବାଜୀ ଓ ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟୀ ଦୁଇମୂର୍ତ୍ତି ବ୍ରାହ୍ମଣ ପୂଜାରୀ ଏକସଙ୍ଗେ ରନ୍ଧନ କରିବାକୁ ଆରମ୍ଭ କରିଦେଲେ । ପ୍ରାୟ ଦେଢ଼ ମହଣ ଚାଉଳର ଅନ୍ନଭୋଗ ପ୍ରସ୍ତୁତ ହେଲା । ସମସ୍ତେ ସ୍ନାନାଦି କରି "ଜୟ ଜୟ ନିତ୍ୟାନନ୍ଦାଦ୍ୱୈତ ଗୌରାଙ୍ଗ" ଏଇ ପଦ କୀର୍ତ୍ତନ କରି ବସିଲେ । କେଉଁଠାରୁ ଯେ ଏତେ ଲୋକ ସମାଗମ ହୋଇଗଲେ, କିଏ କହିବ ? ଗ୍ରାମବାସୀ ଆବାଳ ବୃଦ୍ଧ ବନିତା ସମସ୍ତେ ଯେପରି ଆତ୍ମହରା ହୋଇ ଭାଗବତ ଗୃହ ଆଡ଼କୁ ଧାଇଁଲେ । ଦ୍ୱେଷ ହିଂସା ନାହିଁ, ଶ୍ରେଷ୍ଠ ବଡ଼ ଭେଦଜ୍ଞାନ ନାହିଁ । ସମସ୍ତେ ଏକଜନ ମିଳିତ, ସମସ୍ତଙ୍କ ପ୍ରାଣରେ ଗୋଟିଏ ଭାବ ! କ୍ରମେ କ୍ରମେ ଲୋକସଂଖ୍ୟା ଅନୁମାନ ଚୌଦଶହରୁ ଊର୍ଦ୍ଧ୍ୱ ହୋଇଗଲା ।

କୀର୍ତ୍ତନ ଶେଷ ହେଲା, ସଙ୍ଗେ ସଙ୍ଗେ ଠାକୁରଙ୍କର ଭୋଗ ମଧ୍ୟ ଶେଷ ହୋଇଗଲା । ବଡ଼ବାବାଜୀ ମହାଶୟ କହିଲେ; "ଭାଇମାନେ, ଆମ୍ଭେ ହେଲୁ ବିଦେଶୀ, ତୁମ୍ଭମାନଙ୍କ ଗ୍ରାମକୁ ଆସି ତୁମ୍ଭମାନଙ୍କର ଭିକ୍ଷା ଚାଉଳ, ଡାଲିକୁ ରନ୍ଧନ କରି ତୁମ୍ଭ ଠାକୁରଙ୍କୁ ଭୋଗ ଦେଇଛୁ । ମହାପ୍ରସାଦ ଗ୍ରହଣ କରିବାକୁ ତୁମ୍ଭମାନଙ୍କର କୌଣସି ଆପତ୍ତି ଅଛି କି ? ଦେଖ, ଭଗବନ୍ନିବେଦିତ ମହାପ୍ରସାଦ ସ୍ପର୍ଶ ଦୋଷରେ ନଷ୍ଟ ହୁଏନା ।

"ଟ୍ରର୍ଶ ଦୋଷେ ମହାପ୍ରସାଦ ନଷ୍ଟ ନାହି ହଏ ।
ନଷ୍ଟ ଦୋଷ ଘଟାଇଲେ ନରକ ନିଶ୍ଚୟ ॥

ଶାସ୍ତ୍ରରେ ଅଛି :—

"ଶୁଷ୍କଂ ପର୍ଯୁ୍ୟଷିତଂ ବାପିନୀତଂ ବା ଦୂରଦେଶତଃ ।
ପ୍ରାପ୍ତି ମାତ୍ରେଣ ଭୋକ୍ତବ୍ୟଂ ନାତ୍ର କାଲ ବିଚାରଣା ।।"

ଇତ୍ୟାଦି ବହୁ ପ୍ରମାଣାଦି ଦେବାପରେ ସ୍ୱାମୀଜୀ ଜନୈକ ଭଦ୍ରଲୋକ ଓଡ଼ିଆ ଭାଷାରେ ବଡ଼ବାବାଜୀ ମହାଶୟଙ୍କର ଉପଦେଶାବଳୀ ସମସ୍ତଙ୍କୁ ବୁଝାଇଦେଲେ । ଏହା ଶୁଣି ଉପସ୍ଥିତ ସମସ୍ତେ ସମସ୍ୱରେ କହି ଉଠିଲେ, "ମହାପ୍ରଭୁ, ଆଜ ଆମ୍ଭର ସୌଭାଗ୍ୟ ଯେ ଆପଣଙ୍କ ଦର୍ଶନ ଲାଭ କରି ଆପଣଙ୍କଠାରୁ ପ୍ରସାଦ ଲାଭ କରି ଆମ୍ଭେ ତରିଯିବା ।" ସେତେବେଳେ ବଡ଼ବାବାଜୀ ମହାଶୟ ସମସ୍ତଙ୍କୁ ଗୋଟିଏ ପଙ୍‌କ୍ତିରେ ବସିଯିବାକୁ ଆଦେଶ କଲେ । କେହି କେହି "ଆପଣ ନବସିଲେ ଆମ୍ଭେ ବସିବୁ ନାହିଁ" ବୋଲି ଆପତ୍ତି କଲେ, କିନ୍ତୁ ବଡ଼ବାବାଜୀ ମହାଶୟ ସମସ୍ତଙ୍କର ହାତ ଧରି ମଧୁର ବଚନରେ ବିନୟ କରି ସମସ୍ତଙ୍କୁ ବସାଇଲେ ଏବଂ ପରିବେଶଣକାରୀ ପୂଜାରୀ ମାନଙ୍କୁ କହିଲେ, "ଦେଖ ବାବା, କୌଣସି ଚିନ୍ତା ନାହିଁ, ପ୍ରାଣ ଖୋଲି ପରିବେଷଣ କର, ପରମ ଦୟାଳୁ ନିତାଇ ଗୌର ଅଭାବ ପୂରଣ କରିବେ ।" ଏଇକଥା କହିବା ମାତ୍ରେ ସମସ୍ତେ ମହାନନ୍ଦରେ **"ହରିବୋଲ"** କହି ଧ୍ୱନି ଦେଲେ । ପଙ୍‌କ୍ତି ଆରମ୍ଭ ହେଲା । ପ୍ରାୟ ଏକଶହରୁ ଊର୍ଦ୍ଧ୍ୱ ସ୍ତ୍ରୀ ଲୋକଙ୍କୁ ପ୍ରସାଦ ବିତରିତ ହେଲା । ଅବଶେଷରେ ପରିବେଷକ ପୂଜାରୀଗଣ ଏବଂ ବଡ଼ବାବାଜୀ ମହାଶୟ ପ୍ରସାଦ ସେବନ କରିବାକୁ ବସିଲେ । ରାତି ପ୍ରାୟ ସେତେବେଳକୁ ଏକ ପ୍ରହର । ଏହି ମହା ମହୋତ୍ସବ ଦେଖି ସମସ୍ତେ ଅବାକ୍ । ସମସ୍ତେ କହିବାକୁ ଲାଗିଲେ

"ଦେଖ, କେତେ ଶୃଙ୍ଖଳ ରାନ୍ଧି କେତେ ଲୋକ ଖୁଆଇଲେ । ଏ ବାବାଙ୍କ ମହାପ୍ରଭୁ ସାମାନ୍ୟ ନୁହଁନ୍ତି, ନିଶ୍ଚୟ ଈଏ ଜଣେ ମହାପୁରୁଷ ।" ସେହି ଗ୍ରାମରେ ଏମାନେ ସଦଳବଳେ ରାତି-ଯାପନ କଲେ । ପରଦିନ ପ୍ରଭାତରେ ପୁନରାୟ କୀର୍ତ୍ତନ କରି ଗ୍ରାମ ପରେ ଗ୍ରାମ କୀର୍ତ୍ତନ ଆନନ୍ଦରେ ଭସାଇ ସମାଗତ ପାଞ୍ଚ, ଛ' ଦିନ ପର୍ଯ୍ୟଟନ କରି ଶ୍ରୀକ୍ଷେତ୍ରକୁ ପ୍ରତ୍ୟାବର୍ତ୍ତନ କରିବେ ବୋଲି ସ୍ଥିର କଲେ ।

ଶ୍ରୀକ୍ଷେତ୍ର କଥା ସ୍ମରଣ ହେବା ମାତ୍ରେ ବଡ଼ବାବାଜୀ ମହାଶୟ ବଳରାମ ବାବୁଙ୍କୁ ପଚାରିଲେ, "ଏଠାରୁ ପୁରୀଧାମ କେତେଦୂର ହେବ ?" ବଳରାମ ବାବୁ କହିଲେ, "ପୁରୀଧାମ ଏଠାରୁ ପ୍ରାୟ ଏଗାର; ବାର କୋଶ ଦୂରରେ ଉତ୍ତର-ପୂର୍ବ କୋଣରେ ଅବସ୍ଥିତ ।" ବଡ଼ବାବାଜୀ ମହାଶୟ ନୀରବ ରହିଲେ । ଅତି ପ୍ରତ୍ୟୁଷରୁ ଉଠି କୀର୍ତ୍ତନାନନ୍ଦରେ ଉନ୍ମତ୍ତ ହୋଇ ଶ୍ରୀଧାମ ପୁରୀ ଅଭିମୁଖରେ ଯାତ୍ରା କଲେ । ତିନ, ଚାରି କୋଶ ଯାଇଛନ୍ତି କି ନାହିଁ, କୌଣସି ଗ୍ରାମର ବହୁ ଭକ୍ତ ମଣ୍ଡଳୀଙ୍କର ଅନୁରୋଧରେ ଅଗତ୍ୟା ସେଦିନ ସେଠାରେ ଆତିଥ୍ୟ ସ୍ୱୀକାର କରିବାକୁ ବାଧ୍ୟ ହେଲେ । ଏହାପରେ ଦ୍ୱାଦଶୀ ଦିନ ଦ୍ୱିପ୍ରହର ସମୟରେ ଏମାନେ ଆସି ପୁରୀ ସମୁଦ୍ର କୂଳରେ ପହଞ୍ଚିଲେ । ପରମାନନ୍ଦରେ ସମୁଦ୍ର ସ୍ନାନ ସାରି କୀର୍ତ୍ତନ କରି କରି ଶ୍ରୀଜଗନ୍ନାଥ ଦେବଙ୍କ ଶ୍ରୀମନ୍ଦିର ଆଡ଼କୁ ଯାଉଛନ୍ତି, ଏହିପରି ସମୟରେ ଗଙ୍ଗାମାତା ମଠର ବିହାରୀ ପୂଜାରିଜୀ ଆସି ଅତିଶୟ ଆଗ୍ରହ ସହକାରେ ସମସ୍ତଙ୍କୁ ମହାପ୍ରସାଦ ସେବନ କରିବା ପାଇଁ ମଠ ଭିତରକୁ ନେଇଗଲେ । ଏମାନେ ସେଠାରେ ପରମାନନ୍ଦରେ ମହାପ୍ରସାଦ ଗ୍ରହଣ କରି ନାମ କରି ଶ୍ରୀ ଶ୍ରୀ ଜଗନ୍ନାଥବଲ୍ଲଭରେ ଆସି ବିଶ୍ରାମ କଲେ ।

# ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ନବଯୌବନ ଦର୍ଶନ

ଦେଖ ଦେଖୁ ଅମାବାସ୍ୟା ଆସି ଉପସ୍ଥିତ ହେଲା । ଆଜି ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ନବଯୌବନ ଦର୍ଶନୋତ୍ସବ । ଶ୍ରୀ ମନ୍ଦିର ଲୋକାରଣ୍ୟ । ସେହି ଜନଗହଳ ଭିତରେ ବଡ଼ବାବାଜୀ ମହାଶୟ "ଜୟ ଜୟ ନୀଳାଚଳ ଚନ୍ଦ୍ର ଜଗନ୍ନାଥ ।

କୃପାକରି କର ପ୍ରଭୁ ଶୁଭ ଦୃଷ୍ଟିପାତ ।।"

କହି ଉଦ୍ଦଣ୍ଡ ନୃତ୍ୟ କରି କରି ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ସମ୍ମୁଖରେ ସାଷ୍ଟାଙ୍ଗ ପ୍ରଣାମ କଲେ । ସଙ୍ଗୀମାନେ ମଧ୍ୟ ତାଙ୍କର ଅନୁକରଣ କଲେ । କିଛିକ୍ଷଣପରେ ଶ୍ରୀ ମନ୍ଦିର ଦ୍ୱାର ଉନ୍ମୁକ୍ତ ହେଲା । ବଡ଼ବାବାଜୀ ମହାଶୟ ଅନେକ ଦିନ ପରେ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ଶ୍ରୀମୁଖଦର୍ଶନ କରି ପ୍ରେମାନନ୍ଦରେ ବିଭୋର ହୋଇ କୀର୍ତ୍ତନ ଧରିଲେ :—

"ବହୁଦିନ ପରେ ଆଜ ଦେଖିଯା ଶ୍ରୀମୁଖ ।
ଖଣ୍ଡିଲ ହୃଦୟ-ବ୍ୟଥା ପରାଣେର ଦୁଃଖ ।।

ଦେଖ ନା ଗୃହିଯା କିବା ରୂପେର ମାଧୁରୀ ।
ଚାଁଦ ମୁଖ ଦେଖେ ସବେ ଆପନା ପାସରି ।।

କୀର୍ତ୍ତନ ଆନନ୍ଦରେ ସମସ୍ତେ ଆତ୍ମହରା । ସ୍ତ୍ରୀ, ପୁରୁଷ ସମସ୍ତେ କରତାଳି ଦେଇ ନାଚି ନାଚି ପ୍ରେମାନନ୍ଦରେ ବିଭୋର । କାହାରି କୌଣସି ସଙ୍କୋଚ ନାହିଁ । କିଛି ସମୟ ପରେ କୀର୍ତ୍ତନ-ସମାପ୍ତି ହେଲା ।

# ଶ୍ରୀ ଶ୍ରୀ ଗୁଣ୍ଡିଚା ମାର୍ଜନ

ସିଦ୍ଧ ବକୁଳ ମଠରେ ପ୍ରସାଦ ପାଇବା ଲାଗି ମଠର ଅଧିକାରୀ କୃଷ୍ଣଦାସ ବାବାଜୀ ମହାଶୟ ଆସି ଅତିଶୟ ଯତ୍ନ ଓ ଆଗ୍ରହ ସହକାରେ ସମସ୍ତଙ୍କୁ ଅଭ୍ୟର୍ଥନାକରି ମଠକୁ ଘେନିଗଲେ ଏବଂ ଅତ୍ୟନ୍ତ ଆଦରର ସହିତ ନାନାବିଧ ପ୍ରସାଦ ଦେଇ ଆପ୍ୟାୟିତ କଲେ । ପଙ୍ଗତରେ ବସିଥିବାବେଳେ ପ୍ରସଙ୍ଗକ୍ରମେ ଶ୍ରୀମନ୍ ମହାପ୍ରଭୁଙ୍କର ଗୁଣ୍ଡିଚା ମାର୍ଜନ ଲୀଳାର କଥା ଉଠିଲା । ଜନୈକ ବୈଷ୍ଣବ କହି ଉଠିଲେ, "ଗୁଣ୍ଡିଚା ମାର୍ଜନ ଲୀଳାର କଥା ତ ଆମ୍ଭେ ଗ୍ରନ୍ଥରେ ଦେଖିବାକୁ ପାଉ, ଏହାର ଆଚରଣ ବିଷୟ ତ କିଛି ଉଲ୍ଲେଖ ନାହିଁ । ଶ୍ରୀମନ୍ ମହାପ୍ରଭୁଙ୍କର ଏଇ ଲୀଳାର ଅନୁକରଣ ଭକ୍ତର ଏକାନ୍ତ କର୍ତ୍ତବ୍ୟ ।" ଏହା ଶୁଣି ଗମ୍ଭୀରାର ହରିଭଜନ ଦାସ ଅଧିକାରୀ ମହାଶୟ କହିଲେ, "ପୂର୍ବେ ଏହି ଲୀଳା ଏଇପରି ଭାବରେ ଆଚରିତ ହେଉଥିଲା । ନାନା କାରଣରୁ ଗଙ୍ଗାମାତା ମଠର କୀର୍ତ୍ତନ ପାଇଁ ଗୋଳମାଳ ହେବାରୁ ସେମାନେ ବର୍ତ୍ତମାନ ଏହି ଉତ୍ସବରେ ଯୋଗଦାନ କରୁନାହାନ୍ତି । କେବଳ ଗମ୍ଭୀରାର କୀର୍ତ୍ତନ ହୋଇଥାଏ ଏବଂ ନାମକୁ ମାତ୍ର ନିୟମ ରକ୍ଷା କରାହୁଏ କାର୍ଯ୍ୟତଃ କୌଣସି ପ୍ରକାର ଲୀଳା ଅନୁଭବ ହୁଏ ନାହିଁ । କହିବାକୁ ଗଲେ, ଲୀଳାଟି କାଳ ପ୍ରଭାବରେ ସମ୍ପୂର୍ଣ୍ଣ ବିଲୁପ୍ତ ପ୍ରାୟ ହୋଇ ଯାଇଛି ।" ସେତେବେଳେ ବଡ଼ବାବାଜୀ ମହାଶୟ କହିଲେ, "ଏଇ ଅପୂର୍ବ ଉତ୍ସବର ପୁନରୁଦ୍ଧାର ଲାଗି ଆପଣମାନଙ୍କର ବିଶେଷ ଯତ୍ନ କରିବା କର୍ତ୍ତବ୍ୟ । କାରଣ ଶ୍ରୀ ଗୌରାଙ୍ଗ ମହାପ୍ରଭୁ ଏଇ ଗୁଣ୍ଡିଚା ମାର୍ଜନ ସେବାଟି ରାଜାଙ୍କ ନିକଟରୁ ମାଗିନେଇଥିଲେ ।" ଏହା ଶୁଣି ସିଦ୍ଧ ବକୁଳ ମଠର ଅଧିକାରୀ ବଡ଼ ବାବାଜୀ ମହାଶୟଙ୍କୁ କହିଲେ, "ଆପଣ ଯଦି

ସାମାନ୍ୟ ଚେଷ୍ଟା କରନ୍ତେ, ତା'ହେଲେ ମୋର ବିଶ୍ୱାସ, ଶ୍ରୀମନ୍ ମହାପ୍ରଭୁଙ୍କର ଏଇ ବିଲୁପ୍ତ ପ୍ରାୟ ନିରୁପମ ଲୀଳା ଉତ୍ସବଟିର ପୁନରୁଦ୍ଧାର ସାଧନ ହୋଇ ପାରନ୍ତା ।" ବଡ଼ ବାବାଜୀ ମହାଶୟ କହିଲେ, "ବାବା, ମୁଁ ନିଶ୍ଚୟ ପ୍ରାଣପଣେ ଚେଷ୍ଟା କରିବି । ଏଥିରେ ମୁଁ ଆପଣ ସମସ୍ତଙ୍କର ଆଶୀର୍ବାଦ ଓ ପରମ ଦୟାଳୁ ନିତାଇ ଗୌରଙ୍କର କୃପା ଚାହେଁ ।" ଏତିକ ମାତ୍ର କହି ବାବାଜୀ ମହାଶୟ ପଙ୍ଗତ ମଧ୍ୟରେ ବୈଷ୍ଣବମଣ୍ଡଳୀ ନିକଟରେ ଯୋଡ଼ହସ୍ତେ ନିବେଦନ କରି କହିଲେ, "ଆପଣମାନେ କୃପାକରି ଆଗାମୀ କାଲି ଦିନ ଦ୍ୱିପ୍ରହର ସମୟରେ ସିଂହଦ୍ୱାର ନିକଟରେ ଆମ୍ଭମାନଙ୍କ ସହିତ ଯୋଗଦାନ କଲେ କୃତାର୍ଥ ହେବି । ଏତିକ ମାତ୍ର ଆପଣମାନଙ୍କର କାର୍ଯ୍ୟ । ଆପଣମାନେ ଆମ୍ଭଙ୍କୁ ଯେଉଁ ପଥରେ ନେବେ, ଆମ୍ଭେ ସେଇ ପଥରେ ଚାଲିବୁ ।" ଏହାଶୁଣି ସମସ୍ତେ ଅତିଶୟ ଆନନ୍ଦର ସହିତ କହି ଉଠିଲେ, "ଏହା ଆମର ଅତିଶୟ ସୌଭାଗ୍ୟର କଥା । ଶ୍ରୀ ଗୌରାଙ୍ଗ ମହାପ୍ରଭୁ ସ୍ୱୟଂ ଆଚରଣ କରି ଯେଉଁ ସେବା କାର୍ଯ୍ୟ ଦେଖାଇ ଯାଇଛନ୍ତି, ଆମ ସମସ୍ତଙ୍କର ତାହା ଅବଶ୍ୟ ଆଚରଣୀୟ ।" ସେତେବେଳେ ସିଦ୍ଧବକୁଳ ମଠର ମହନ୍ତ ପରମାନନ୍ଦ ଦାସ ବାବାଜୀ ମହାଶୟ ଓ ଅଧିକାରୀ କୃଷ୍ଣ ଦାସ ବାବାଜୀ ମହାଶୟ ସ୍ୱଇଚ୍ଛାରେ କହିଉଠିଲେ, "ଏଇ ମହତ୍ ଏବଂ ଶୁଭକାର୍ଯ୍ୟରେ ଆମେ ନିଶ୍ଚୟ ଯୋଗଦାନ କରିବୁ ।"

ପଙ୍ଗତ ଶେଷ ହେଲା । ବଡ଼ ବାବାଜୀ ମହାଶୟ ସଦଳବଳେ ଗଙ୍ଗାମାତା ମଠକୁ ଯାଇ ବିହାରୀ ପୂଜାରୀଙ୍କୁ ଓ ମହନ୍ତ ମାଧବ ଦାସ ବାବାଜୀ ମହାଶୟଙ୍କୁ ଗୁଣ୍ଡିଚା ମାର୍ଜନ ସମ୍ବନ୍ଧରେ ବିଶେଷ ଭାବରେ ବୁଝାଇ କହିବାରୁ ସେମାନେ ମଧ୍ୟ ଉତ୍ସାହର ସହିତ କହିଲେ,

"ଇଏ ତ ଅତି ଉତ୍ତମ କଥା । ଆପଣ ସାମାନ୍ୟ ଚେଷ୍ଟାକଲେ ଏ କାର୍ଯ୍ୟ ନିଶ୍ଚୟ ହେବ । ଆମେ ଅବଶ୍ୟ ଏ କାର୍ଯ୍ୟରେ ଯୋଗଦାନ କରିବୁ ।" ସେତେବେଳେ ବଡ଼ବାବାଜୀ ମହାଶୟ ବଳରାମବାବୁଙ୍କୁ ଏକଶତ ନୂତନ କଳସୀ ଓ ଝାଡ଼ୁ ସଂଗ୍ରହ କରିବା ଲାଗି ଆଦେଶ କଲେ । ବଳରାମ ବାବୁ ବଡ଼ ବାବାଜୀ ମହାଶୟଙ୍କର ଆଦେଶକୁ ଶିରୋଧାରଣ ପୂର୍ବକ ହସି ହସି କହିଲେ, "କିଛି ମହାପ୍ରସାଦର ବ୍ୟବସ୍ଥା କଲେ ଭଲ ହୁଅନ୍ତା ନାହିଁକି ?" ବଡ଼ ବାବାଜୀ ମହାଶୟ ହସି ଉତ୍ତର ଦେଲେ, "ତାହା ହୋଇ ପାରିଲେ ତ ଖୁବ୍ ଭଲ ହୁଅନ୍ତା, ଆମେ ତ କେବଳ ମହାପ୍ରସାଦକୁ ଜାଣୁ ଓ ଚିହ୍ନୁ । ପ୍ରଭୁ ଯଦି କୃପା କରି ଆମକୁ ଏତେ ପ୍ରସାଦ ନ ଦିଅନ୍ତି, ତେବେ କଣ ଆମପରି ଲୋକ କେବେହେଲେ ତାଙ୍କୁ ଭଜୁଥାଆନ୍ତା ?" ବଡ଼ ବାବାଜୀ ମହାଶୟଙ୍କର ରସପୂର୍ଣ୍ଣ କଥା ଶୁଣି ସମସ୍ତେ ଉଚ୍ଚ ସ୍ୱରରେ ହସି ଉଠିଲେ । ଏହା ପରେ ସମସ୍ତେ ନାମ ସଂକୀର୍ତ୍ତନ କରି କରି ଶ୍ରୀ ଜଗନ୍ନାଥ ବଲ୍ଲଭରୁ ବାହାରି ଗଲେ । ସୁଚତୁର ବଳରାମ ବାବୁ ଇତି ମଧ୍ୟରେ ଏକ ଶତ ଝାଡ଼ୁ ଓ କଳସୀର ବନ୍ଦୋବସ୍ତ କରି ସାରିଥିଲେ ।

ଏଇ ବଳରାମଟି ଠିକ୍ ଯେପରି ଶ୍ରୀମନ୍ ମହାପ୍ରଭୁଙ୍କର ବାଣୀନାଥ । ସେ ପଟ୍ଟନାୟକ, ଇଏ ମଧ୍ୟ ପଟ୍ଟନାୟକ୍ । ତେବେ ଶ୍ରୀମନ୍ ମହାପ୍ରଭୁ ବାଣୀନାଥକୁ କୌଣସି ଆଦେଶ କରୁ ନ ଥିଲେ । ଏଇ ମହାପୁରୁଷ କିନ୍ତୁ ବଳରାମକୁ ପ୍ରୟୋଜନ ଅନୁସାରେ ଆଦେଶ କରନ୍ତି । ବଳରାମ ଭିନ୍ନ ସେ ଆଉ ଯେପରି କାହାରିକୁ ଜାଣନ୍ତି ନାହିଁ । ବଳରାମ ମଧ୍ୟ ତାଙ୍କର ଆଜ୍ଞା ପାଳନ ଲାଗି ସର୍ବଦା ପ୍ରସ୍ତୁତ । ଗୃହ, ଧନ, ସ୍ତ୍ରୀ, ପୁତ୍ର, ପରିଜନ ସମସ୍ତଙ୍କ ଦ୍ୱାରା ଯଦି ଏଇ ମହାପୁରୁଷଙ୍କର ସନ୍ତୋଷ ବିଧାନ ହୋଇପାରେ । ବଳରାମ

ଟସେଥିରେ ମଧ୍ଯ କୁଣ୍ଠିତ ନୁହେଁ । ମହାପୁରୁଷ ମଧ୍ଯ ତାଙ୍କ ପ୍ରତି ଯଥେଷ୍ଟ ଅନୁକୂଳ । ମାସକରେ ପ୍ରାୟ ୧୫ ଦିନ କଟେଲଖିଙ୍କୁ ନ ଗଲେ ମଧ୍ଯ ତାଙ୍କର କୌଣସି ଅଭାବ ହୁଏ ନାହିଁ ।

ଯେଉଁ ଜନ ଭଜେ ମୋତେ ଅନନ୍ୟ ହୋଇଣ ।
ତାରେ ଭିକ୍ଷା ଦେଇ ମୁହିଁ ମାଥାପୁ ବହଇ ।।

ଏଇ ମହା ବାକ୍ୟଟିର ସାର୍ଥକତା ଆମ୍ଭେମାନେ ବଳରାମ-ବାବୁଙ୍କ ନିକଟରେ ବେଶ୍ ପ୍ରତ୍ୟକ୍ଷ କରିଛୁ ।

ପ୍ରଭାତରେ ସମସ୍ତେ ନରେନ୍ଦ୍ର ସରୋବରରେ ପ୍ରାତଃକୃତ୍ୟ ସମାପନ କରି କୀର୍ତ୍ତନ କରି କରି ଶ୍ରୀ ଶ୍ରୀ ଜଗନ୍ନାଥ ମନ୍ଦିର ପରିକ୍ରମା ପୂର୍ବକ ଭିତରେ ପ୍ରବେଶ କଲେ । ଯଥାବିଧି ପ୍ରାତ୍ୟହିକ କୀର୍ତ୍ତନ ପରେ ବଲ୍ଲଭଭୋଗର ପ୍ରସାଦ ପାଇ ସମସ୍ତେ ଦକ୍ଷିଣ ଦ୍ୱାରରେ ଲାଲବାବୁଙ୍କର ଛତ୍ରକୁ ଗଲେ । ଛତ୍ରର ମ୍ୟାନେଜର ପ୍ୟାରିମୋହନ-ବାବୁ ଏମାନଙ୍କୁ ବିଶେଷ ସ୍ନେହ ଓ ଭକ୍ତି ଭାବନେଇ ଦେଖୁଥିଲେ । ସେ ଅତି ଆଦର ସହକାରେ ଏମାନଙ୍କୁ ସେଠାରେ ବସାଇ ଭୃତ୍ୟ ଘନବନ୍ଧୁ ଦାସକୁ ନାନା ପ୍ରକାର ମହାପ୍ରସାଦ ଆଣିବା ପାଇଁ ଆଦେଶ କଲେ । ଭୃତ୍ୟଟି ମଧ୍ଯ ପରମ ଭକ୍ତ ଏବଂ ମ୍ୟାନେଜର ବାବୁଙ୍କ ଅପେକ୍ଷା ଅଧିକତର ଉତ୍ସାହୀ । ସେ ଖୁବ୍ ଶୀଘ୍ର ନାନା ପ୍ରକାର ପିଠାପଣା ଓ ପଖାଳ ପ୍ରସାଦ ପ୍ରଭୃତି ନେଇ ଆସିଲା । ଏମାନେ ସମସ୍ତେ ମହାପ୍ରସାଦ ପାଇ ଶ୍ରୀ ଶ୍ରୀ ଗମ୍ଭୀରାକୁ ଆଗମନପୂର୍ବକ ବିଶେଷ ଉଦ୍ଯୋଗର ସହିତ ସେଠାକାର କୀର୍ତ୍ତନ ସମ୍ପ୍ରଦାୟକୁ ବିଦାୟ ଦେଇ ଓ ଶ୍ରୀ ଶ୍ରୀ ଜଗନ୍ନାଥ ବଲ୍ଲଭରେ ଆସି ଦେଖନ୍ତି ଯେ ସମସ୍ତେ ଝାଞ୍ଜ, କଳସୀ ଖୋଳ, କରତାଳାଦି ଧରି ଏମାନଙ୍କ ପାଇଁ ଅପେକ୍ଷାକରି ରହିଛନ୍ତି । ଏମାନଙ୍କୁ ଦେଖି

ସମସ୍ତେ ହରିଧ୍ୱନି କରିବାକୁ ଲଗିଲେ । ଇତ୍ୟବସରରେ ଶ୍ରୀପାଦ ରଘୁନାଥ ଦେବ ଗୋସ୍ୱାମୀ ପ୍ରଭୁ ଓ ଶ୍ରୀପାଦ ହରିଦେବ ଗୋସ୍ୱାମୀ ପ୍ରଭୁ ଆସି ଉପସ୍ଥିତ ହେଲେ । ସମସ୍ତେ ଆନନ୍ଦରେ ମତ୍ତ ହେଲେ । ବଡ଼ ବାବାଜୀ ମହାଶୟ ନିତାଇ ଗୃନ୍ଦଙ୍କର କରୁଣାର ଜୟଗାନ କରି ଭାବବିହ୍ୱଳିତ ହୋଇ କୀର୍ତ୍ତନର ଦୁଆ ଧରିଲେ :—

"ଭାବାବେଶେ ମହାପ୍ରଭୁ ଭକ୍ତଗଣ ସଙ୍ଗେ ।
ନାଚିତେ ନାଚିତେ ଚଲେ ଅତି ମନୋରଙ୍ଗେ ।।
କାଲି ଆସ ବେନ ପ୍ରାନବନ୍ଧୁ ନିକୁଞ୍ଜ ମନ୍ଦିରେ ।
ସ୍ଥାନ ଉପସ୍କରିବାରେ ଚଲଗୋ ସତ୍ୱରେ ।।
ନାନା ଜାତି ଫୁଲ ତୁଲି କୁଞ୍ଜ ସାଜାଇବ ।
ସୁଗନ୍ଧ କୁସୁମ ହାର ବନ୍ଧୁଗନେ ଦିବ ।।
କୁସୁମ ତଲପେ ବନ୍ଧୁ ଶୁଇବେନ ସୁଖେ ।
ବାସିତ ତାମ୍ବୁଲ ଲେଇ ଦିବ ତାର ମୁଖେ ।।
ସୁଗନ୍ଧିମର ଧରି କେହ କରିବେ ବ୍ୟଜନ ।
କେହ ବା କରିବେ ମୃଦୁ ପାଦ ସମ୍ବାହନ ।।
ଚୂୟା ଚନ୍ଦନ ଗନ୍ଧ ଦିବ ଗୃରି ଭିତେ ।
ରସମୟ ବନ୍ଧୁ କେଲି କରିବେ ନିଭୃତେ ।"

ଏହିପରି ମଧୁର କଣ୍ଠର ମଧୁର ଝଙ୍କାରରେ ଚତୁର୍ଦ୍ଦିଗ ମୁଖରିତ ହେବାକୁ ଲଗିଲ । ସମସ୍ତେ ପ୍ରେମାବେଶରେ ଶ୍ରୀଶ୍ରୀ ଗୁଣ୍ଡିଚ୍ଚା ମନ୍ଦିରରେ ପ୍ରବେଶ କଲେ । ଶ୍ରୀ ଶ୍ରୀ ନିତ୍ୟାନନ୍ଦ ସନ୍ତାନ ରାଜଗୁରୁ ଶ୍ରୀପାଦ ରଘୁନାଥ ଦେବ ଗୋସ୍ୱାମୀ ପ୍ରଭୁ ଓ ଶ୍ରୀପାଦ ହରିଦେବ ଗୋସ୍ୱାମୀ ପ୍ରଭୁ ଏଇ ଦୁଇଜଣ ରତ୍ନବେଦୀ ଉପର ପରିଷ୍କାର କରିବାକୁ ଲଗିଲେ । ଅନ୍ୟାନ୍ୟ ଭକ୍ତଗଣ ଅଳ୍ପକ୍ଷଣ ମଧ୍ୟରେ ମନ୍ଦିରର ଚତୁର୍ଦ୍ଦିଗ ପରିଷ୍କାର କରିଦେଲେ ଓ ବଡ଼ବାବାଜୀ

ମହାଶୟଙ୍କର ନିର୍ଦ୍ଦେଶକ୍ରମେ ଇନ୍ଦ୍ରଦ୍ୟୁମ୍ନ ସରୋବରରୁ କଳସୀରେ ଜଳ ଆଣି ଶ୍ରୀମନ୍ଦିରକୁ ସୁଚାରୁରୂପେ ପରିଷ୍କାର କରିଦେଲେ । ସମସ୍ତେ ଆଜି ଏକମନ-ଏକପ୍ରାଣ, ସମସ୍ତେ ଆନନ୍ଦ ସାଗରରେ ନିମଗ୍ନ । ଶ୍ରୀ ଶ୍ରୀ ଗୁଣ୍ଡିଚା ମନ୍ଦିରଟି ଯେପରି ଗୋଟିଏ ଆନନ୍ଦକାନନ ବୋଲି ବୋଧ ହେଉଛି । ହଠାତ୍ ରଘୁନାଥ ଦେବ ଗୋସ୍ୱାମୀ ପ୍ରଭୁ ଭାବାବିଷ୍ଟ ହୋଇ ରତ୍ନବେଦୀ ଉପରୁ ଲମ୍ଫ ପ୍ରଦାନପୂର୍ବକ ନାଚି ନାଚି କହିବାକୁ ଲାଗିଲେ, "ଏହି ଯେ ଆମର ନିତାଇ ଗୌର ଦୁଇ ଭାଇ ନାଚି ନାଚି ଶ୍ରୀ ମନ୍ଦିର ମାର୍ଜନା କରୁଛନ୍ତି । ଆହା ! କି ଅପରୂପ ଶୋଭା !" ଏଇ କଥା କହିବା ମାତ୍ରେ ବଡ଼-ବାବାଜୀ ମହାଶୟଙ୍କର ମନରେ ଏକ ଅନିର୍ବଚନୀୟ ଭାବର ଉଦୟ ହେଲା । ସେ ଭାବ ବିହ୍ୱଳିତ ହୋଇ ପଦ ଧରିଲେ :—

"ଏଇ ଯେ ଆମାର ନିତାଇ ଗୌର ନାଚେ ମନୋରଙ୍ଗେ ।
ଶ୍ରୀ ଅଦ୍ୱୈତ ଗଦାଧର ନାଚେ ସଙ୍ଗେ ସଙ୍ଗେ ।"

ଗୋସ୍ୱାମୀ ପ୍ରଭୁ ଅଚୈତନ୍ୟ ହୋଇପଡ଼ିଲେ । ସମସ୍ତେ ଭାବାବିଷ୍ଟ । ଗୁରୁ ଲଘୁ ଭେଦ ନାହିଁ, ଉପସ୍ଥିତ ଭକ୍ତବୃନ୍ଦ ସମସ୍ତେ ଏହି ଉତ୍ସବାନନ୍ଦ ଉପଭୋଗ କରି ଏକ ବାକ୍ୟରେ କହିବାକୁ ଲାଗିଲେ, "ସାକ୍ଷାତ ନିତାଇ ଚାନ୍ଦ ଯେପରି ବଡ଼ବାବାଜୀ ରୂପରେ ଲୀଳା କରୁଛନ୍ତି । ତା ନହେଲେ ଏପରି ଆନନ୍ଦ ତ ଆମେ ଆଉ କେବେବେଳେ ଉପଭୋଗ କରିନାହୁଁ । ଯେଉଁ ଲୀଳା ଶ୍ରୀମନ ମହାପ୍ରଭୁ ପ୍ରକଟ କରିଥିଲେ, ଶାସ୍ତ୍ରରେ ଯାହା ଶୁଣିବାକୁ ପାଉଥିଲୁ, ଆଜି ଚାରିଶହ କେତେ ବର୍ଷ ପରେ ଏଇ ମହାତ୍ମାଙ୍କ କୃପାରୁ ଆମେ ସେଇ ଲୀଳା ଏଠାରେ ଉପଭୋଗ କରୁଛୁ ।" କେହି କେହି ପ୍ରେମାବେଗରେ କାନ୍ଦି କାନ୍ଦି ଅଧିର ହୋଇପଡ଼ୁଛନ୍ତି । ଆଉ କିଏ ବା ବଡ଼ବାବାଜୀ ମହାଶୟ ଯେଉଁ ଯେଉଁ ସ୍ଥାନକୁ

କଳସୀ ଧରି ନାଚି ନାଚି ଯାଉଛନ୍ତି, ସେହି ସେହି ସ୍ଥାନରେ ଗଡ଼ାଗଡ଼ି କରି ନିଜକୁ ଧନ୍ୟ ମନେ କରୁଛନ୍ତି । ବଡ଼ବାବାଙ୍କ ମହାଶୟଙ୍କର ଗୁଣ୍ଡିଚା ମାର୍ଜନ କଥା ସାମାନ୍ୟ ଲେଖନୀ ଦ୍ୱାରା ପ୍ରକାଶ କରିବା ଅସମ୍ଭବ । ଯେ କେହି ଭାଗ୍ୟବାନ ବ୍ୟକ୍ତି ବଡ଼-ବାବାଜୀ ମହାଶୟଙ୍କ ସଙ୍ଗରେ ରହି ଏହି ଦର୍ଶନ କରିଛନ୍ତି, ସେ ଏହାର ମଧୁରିଭ କିଞ୍ଚିତ୍ ଅନୁଭବ କରିପାରିଛନ୍ତି । ଏହାଙ୍କର ଅଦ୍ଭୁତ କୃପାଶକ୍ତି ପ୍ରଭାବରେ ଗୁଣ୍ଡିଚା ମାର୍ଜନ ଲୀଳାନନ୍ଦ ଏବେ ମଧ୍ୟ ପୂର୍ଣ୍ଣଭାବେ ବିରାଜମାନ ।

ଏହିପରି ଭାବରେ ସମସ୍ତେ ମିଳି ମିଶି ପ୍ରେମାନନ୍ଦରେ ରତ୍ନବେଦୀ ଏବଂ ମଣିକୋଠା ଧୌତ କଲେ । କେହି କେହି ବା କଳସୀ ଖପରାରେ ଜଳ ଆଣି ମନ୍ଦିରର ଉପରିଭାଗ ଧୌତ କରିବାକୁ ଲାଗିଲେ । କ୍ରମେ ଜଗମୋହନ, ବାହାରିଚତ୍ୱର, ଭୋଗ ମଣ୍ଡପ ଏବଂ ରନ୍ଧନଶାଳା ପ୍ରଭୃତି ସମସ୍ତ ଶ୍ରୀମନ୍ଦିର ସମ୍ପୂର୍ଣ୍ଣ ରୂପେ ସୁଧୌତ କରି ନିଜ ନିଜର ମନୋବୃତ୍ତି ପରି ସ୍ୱଚ୍ଛ ଓ ନିର୍ମଳ କରିଦେଲେ । ପରିଶେଷରେ ସମସ୍ତେ ଏକତ୍ର ହୋଇ ଜଳକେଳି କରିବା ଉଦ୍ଦେଶ୍ୟରେ ଇନ୍ଦ୍ରଦ୍ୟୁମ୍ନ ସରୋବରକୁ ଗଲେ । ଜଣେ ଜଣକରି ଆନନ୍ଦରେ ଜଳକୁ ଝାମ୍ପ ପ୍ରଦାନ କଲେ । ଜଣେ ଅନ୍ୟ ଜଣକୁ ବଳପୂର୍ବକ ଗଭୀର ଜଳକୁ ଟାଣି ନେଉଛନ୍ତି । କେହି ବା କାହାରିକୁ କାନ୍ଧରେ ବସାଇ ପାଣି ଭିତରେ ନାଚୁଛନ୍ତି । ବଡ଼ ବାବାଜୀ ମହାଶୟଙ୍କର ସନ୍ତରଣ କରିବାର ଏପରି ଅଦ୍ଭୁତ ଶକ୍ତି ଥିଲା ଯେ ସେ ହାତର ସାହାଯ୍ୟ ନ ନେଇ ଠିଆ ଠିଆ ଟହଁରି ପହଁରି ଅନେକ ଦୂର ପର୍ଯ୍ୟନ୍ତ ଯାଇ ପାରୁଥିଲେ । ଆଜି ମଧ୍ୟ ସେହିପରି ପହଁରି ଟହଁରି ବହୁତ ଦୂରକୁ ଚାଲିଗଲେ, ମନେ ହେଲା ଯେପରି ସେ ପାଣିରେ ଚାଲି ଚାଲି ଯାଉଛନ୍ତି । ତାପରେ, ଚିତ୍ତହୋଇ ପାଣିରେ ଭାସିବାକୁ ଲାଗିଲେ ସତେ ଯେପରି ଗୋଟିଏ ଦାରୁମୟ ମୂର୍ତ୍ତି ଭାସୁଛି ।

ଏହି ସମୟରେ ଜଣେ ବ୍ୟକ୍ତି ଦଶ ଏଗାର ବର୍ଷର ବାଳକକୁ ନେଇ ତାଙ୍କର ବକ୍ଷ ଉପରେ ବସାଇ ଦେବା ମାତ୍ରେ ଜନୈକ ଭକ୍ତ କହି ଉଠିଲେ, "ଦେଖ ଦେଖ, ଠିକ୍ ଯେପରି ଅନନ୍ତ ଶଯ୍ୟା ହୋଇଛି ।" ଏଇପରି କେତେ ପ୍ରକାରର ଜଳକେଳୀ ହେଲା । ଭକ୍ତମାନଙ୍କର ଆନନ୍ଦର ସୀମା ନାହିଁ । ଏଇ ଆନନ୍ଦର ପ୍ରଧାନ ସହଯୋଗୀ ରଘୁନାଥ ଦେବ ଗୋସ୍ୱାମୀ ପ୍ରଭୁ ଏବଂ ବଡ଼ବାବାଜୀ ମହାଶୟ ।

ଜଳକେଳୀ ଶେଷ ହେବା ପରେ ମହାପ୍ରସାଦ ପାଇବାର ଉଦ୍ୟୋଗ ହେଲା । ଅନେକ ପ୍ରକାରର ପିଠାପଣା, ମିଷ୍ଟାନ୍ନ ପ୍ରସାଦ ପହଞ୍ଚିଲା । ଲୋକ ସଂଖ୍ୟା ଯାହା ଅନୁମାନ କରାଯାଇଥିଲା ତା' ଅପେକ୍ଷା ଅନେକ ବେଶୀ ହୋଇଯିବାରୁ ପତ୍ରର ଅଭାବ ପଡ଼ିଲା । ଶେଷରେ କେହି ପତ୍ର ଅଭାବରେ ନିଜ ବସ୍ତ୍ର ଉପରେ, କେହି ବା ଅନ୍ୟ ଜଣକ ସହିତ ମିଶି ଗୋଟିଏ ପତ୍ରରେ ପ୍ରସାଦ ଗ୍ରହଣ କଲେ । ଏଥିରେ ମଧ୍ୟ ସେମାନଙ୍କର ଅତୁଳ ଆନନ୍ଦ । ରାତି ପ୍ରାୟ ଦେଡ଼ ପ୍ରହର ବେଳକୁ ପ୍ରସାଦ ସେବା ଶେଷ ହେଲା । ସମସ୍ତେ ଉଚ୍ଚ କଣ୍ଠରେ ବଡ଼ବାବାଜୀ ମହାଶୟଙ୍କୁ ପ୍ରାଣ ଖୋଲି ଧନ୍ୟବାଦ ଦେଲେ । ଏହିପରି ମହାସମାରୋହରେ ଶ୍ରୀ ଶ୍ରୀ ଗୁଣ୍ଡିଚା ମାର୍ଜନ ଉତ୍ସବ ଶେଷ କରି ପୁନରାୟ କୀର୍ତ୍ତନ କରି କରି ସମସ୍ତେ ପରମ ଆନନ୍ଦରେ ନିଜ ନିଜ ବାସସ୍ଥାନକୁ ଗଲେ ।

## ଶ୍ରୀ ଶ୍ରୀ ରଥଯାତ୍ରା ଉତ୍ସବ

କାଲି ଶ୍ରୀ ଶ୍ରୀ ରଥଯାତ୍ରା ଉତ୍ସବ । ସମସ୍ତଙ୍କ ମନରେ ନାନା ଭାବର ଉଦୟ ହୋଇଛି । ରାତି ପ୍ରଭାତରେ ଶ୍ରୀ ଶ୍ରୀ ଜଗନ୍ନାଥ

ଦେବ ରଥରେ ବିଜେ କରିବେ, ପ୍ରାଣଭରି ତାଙ୍କର ଶ୍ରୀମୁଖ ଦର୍ଶନ କରିବେ । ଏଇ ଉତ୍କଣ୍ଠାରେ ଯେପରି ସେ ରାତ୍ରିଟି ଅତି ଶୀଘ୍ର ପ୍ରଭାତ ହୋଇଗଲା । ସମସ୍ତେ ଭାବାନ୍ୱିତ ହୋଇ ନରେନ୍ଦ୍ର ସରୋବରରେ ସ୍ନାନ କରିବାକୁ ଗଲେ । ଶୀଘ୍ର ଶୀଘ୍ର ପ୍ରାତଃ କୃତ୍ୟ ଶେଷ କରି ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ପହଣ୍ଡି ବିଜୟ ଦେଖିବେ ବୋଲି ସମସ୍ତେ ଶ୍ରୀ ମନ୍ଦିରକୁ ଗଲେ । ସେବକଗଣ ଅତି ବ୍ୟସ୍ତତା ସହକାରେ ଯଥା ସମୟରେ ଖେଚଡ଼ି ଭୋଗ ଦେଇ ବହୁ ମୂଲ୍ୟ ପଟ୍ଟବସ୍ତ୍ରଦ୍ୱାରା ଶ୍ରୀ ଶ୍ରୀ ବଳଭଦ୍ର, ଶ୍ରୀ ଶ୍ରୀ ସୁଭଦ୍ରା ଦେବୀ ଏବଂ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର କଟୀଦେଶ, ବକ୍ଷଦେଶ ପ୍ରଭୃତି ସ୍ଥାନକୁ ଅତି ଯତ୍ନରେ ବନ୍ଧନ କଲେ । ଦଇତା ପଣ୍ଡା ଅଗ୍ରେ ଶ୍ରୀ ଶ୍ରୀ ବଳଦେବଙ୍କୁ ତତ୍ପଶ୍ଚାତ୍ ଶ୍ରୀ ଶ୍ରୀ ସୁଭଦ୍ରା ଦେବୀଙ୍କୁ ଏବଂ ତତ୍ପଶ୍ଚାତ୍ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କୁ ବିଜୟ କରାଇବାକୁ ଲାଗି ପଡ଼ିଲେ । ବଡ଼ବାବାଜୀ ମହାଶୟ ସଦଳ ବଳେ ସେଠାରେ ଉପସ୍ଥିତ ଥିଲେ । ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ଗମନ ଭଙ୍ଗୀ ଦେଖି ଭାବ-ଗଦ୍ଗଦ୍ କଣ୍ଠରେ କୀର୍ତ୍ତନ ଧରିଲେ :—

"ଆସିଛେନ ଜଗନ୍ନାଥ ହେଲିୟା ଦୁଲିୟା ।
ନାଚେରେ ଗୌରାଙ୍ଗ ଆମାର ହେମଙ୍କର ନିୟା ॥
ସ୍ୱରୂପ ରାମାନନ୍ଦ ଦୋଁହେ ରହେ ଦୁଇପାଶେ ।।
ମାତାଲ ଗୌରାଙ୍ଗ ବୃନ୍ଦ ରାଧା ଭାବାବେଶେ ।।

କ୍ରମେ ଶ୍ରୀ ଜଗବନ୍ଧୁ ରଥଉପରେ ଆରୋହଣ କଲେ । ରଥ ଚାଳକଗଣ ଆସି ରଥ ରଜ୍ଜୁ ଧରିଲେ । ଯାତ୍ରୀଗଣ 'ହରିବୋଲ' ଧ୍ୱନି, ଶଙ୍ଖଧ୍ୱନି ଏବଂ ମଙ୍ଗଳମୟ ହୁଳହୁଳି ଧ୍ୱନିରେ ଗଗନ କମ୍ପାଇ ଦେଲେ । କୀର୍ତ୍ତନିୟାମାନଙ୍କର ଶତଶତ ମୃଦଙ୍ଗ ମାଦଳ ଓ ଝାଞ୍ଜର ଧ୍ୱନିରେ ଦଶଦିଗ ମୁଖରିତ ହେଲା । ବଡ଼ବାବାଜୀଙ୍କର

ଜଗନ୍ମନୋହାରୀ ସୁମଧୁର କୀର୍ତ୍ତନ ଆରମ୍ଭ ହେଲା । ଅନିମେଷ-ନୟନରେ ଏତେକ୍ଷଣ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ଶ୍ରୀ ମୁଖଚନ୍ଦ୍ର ଦର୍ଶନ କରୁଥିଲେ । ହଠାତ୍ ଚମକି ଉଠିଲେ । କ'ଣ ଦେଖିଲେ, ସେଇ ଜାଣନ୍ତି । ମହାଶବ୍ଦରେ ରଥ ଗଡ଼ି ଚାଲିଲା, ସେତେବେଳେ ଭାବ ଗଦ୍‌ଗଦ୍ କଣ୍ଠରେ ସ୍ୱରଚିତ ପଦ ଧରିଲେ:—

ରଥର ଆଗେ ନାଚେ ଗୋରା ରାଧା ଭାବାବେଶେ ।
ଆନନ୍ଦେ ଭକତଗନ ନାଚେ ଚାରିପାଶେ ॥
ନିତାଇ ଅଦ୍ୱୈତ ଗଦାଧର ଶ୍ରୀ ବାସାଦି ।
ହରୋଲ ହଇୟା ଭାବେ ନାଚେ ନିରବଧି ॥

ସ୍ୱରୂପ ରାମରାୟ ନାଚେ ଗୋବିନ୍ଦ ମୁକୁନ୍ଦ ।
ବାସୁଦେବ ଘୋଷ ବକ୍ରେଶ୍ୱର ଶିବାନନ୍ଦ ॥
ଗୌଡ଼ଦେଶବାସୀ ଯତ ଭକ୍ତ ଅଗନନ ।
ଗୋରାସନେ ନାଚେ ଭାବେ ହଇୟା ମଗନ ॥

ଜଗନ୍ନାଥେ ଚାହିଁ ଗୋରା କତକିନା ବଲେ ।
ମୁଖବୁକ ଭାସିଯାୟ ନୟନେର ଜଲେ ॥
ପୂର୍ବେଯେନ କୁରୁକ୍ଷେତ୍ରେ ସବ ଗୋପୀ ଗନ ।
କୃଷ୍ଣେର ଦର୍ଶନ ପାଇୟା ଆନନ୍ଦିତ ମନ ॥
ଜଗନ୍ନାଥେ ଦେଖି ପ୍ରଭୁର ସେ ଭାବ ଉଠିଲ ।
ରାଧା ଭାବେ କୃଷ୍ଣଠାଁଇ କହିତେ ଲାଗିଲ ॥

ଶୁନହେ ପରାନ ବନ୍ଧୁ ମୋର ନିବେଦନ ।
ବୃନ୍ଦାବନେ ଚଲଯାଇ କମଲଲୋଚନ ॥
ସେଇ ଭୁମି ସେଇ ଆମି ସେ ନବ ସଙ୍ଗମ ।
ତଥାପି ଆମାର ମନ ହରେ ବୃନ୍ଦାବନ ॥

ଇଁହା ଲୋକାରଣ୍ୟ ହାତି ଘୋଡ଼ା ରଥ ଧ୍ୱଜ ।
ତାଁହା ପୁଷ୍ପ ବନ ଭୃଙ୍ଗ ପିକନାଦ ଶୁନ ॥
ଇଁହା ରାଜବେଶ ସଙ୍ଗେ ପାତ୍ରମିତ୍ର ଗଣ ।
ତାଁହା ନବ ନଟବର ମୁରଲୀ ବଦନ ॥
ବ୍ରଜେ ତୋମା ସଙ୍ଗେ ଯେଉଁ ସୁଖ ଆସ୍ୱାଦନ ।
ସେ ସୁଖ-ସମୁଦ୍ରର ଇଁହା ନାହି ଏକ କଣ ॥
ଆମା ଲଞା ପୁନ ଲୀଳା କର ବୃନ୍ଦାବନେ ।
ତବେ ମୋର ମନ ସାଧ ହୟତେ ପୂରଣେ ॥

କହିକହି ମଧୁର ନୃତ୍ୟ ଆରମ୍ଭ କରିଦେଲେ । କିଛି ସମୟ ପରେ ଶ୍ରୀଶ୍ରୀ ଚୈତନ୍ୟ ଚରିତାମୃତର ଶ୍ରୀ ଶ୍ରୀ ଜଗନ୍ନାଥ ଦର୍ଶନରେ ଶ୍ରୀମନ୍ ମହାପ୍ରଭୁଙ୍କର ରାଧାଭାବାବେଶରେ ପ୍ରଳାପୋକ୍ତି କୀର୍ତ୍ତନ କରିବାକୁ ଲାଗିଲେ :—

"ଅନ୍ୟର ଯେ ଅନ୍ୟ ମନ, ଆମାର ମନ ବୃନ୍ଦାବନ,
ମନେ ବନେ ଏକ କରି ଜାନି ।
ତାଁହା ତୋମାର ପଦଦ୍ୱୟ କରାହ ଯଦି ଉଦୟ,
ତବେ ତୋମାର ପୂର୍ଣ୍ଣ କୃପା ମାନି ॥
ପ୍ରାଣନାଥ ! ଶୁନ ମୋର ସତ୍ୟ ନିବେଦନ ।
ବ୍ରଜ ଆମାର ସଦନ, ତାଁହା ତୋମାର ସଙ୍ଗମ,
ନା ପାଇଲେ ନା ରହେ ଜୀବନ ॥
ପୂର୍ବେ ଉଦ୍ଧବ ଦ୍ୱାରେ ଏବେ ସାକ୍ଷାତ ଆମାରେ,
ଯୋଗ ଜ୍ଞାନେର କହିଲେ ଉପାୟ ।
ତୁମି ବିଦଗ୍ଧ କୃପାମୟ, ଜାନ ଆମାର ହୃଦୟ,
ମୋରେ ଐଛେ କରିତେ ନା ଜୁୟାୟ ॥

ଚିତ୍ତ କାଢ଼ି ତୋମା ହୈତେ       ବିଷୟେ ଗୃହ୍ନ ଲଗାଇତେ,
ଯତ୍ନ କରି ନାରି କାଢ଼ିବାରେ ।
ତାରେ ଜ୍ଞାନ ଶିକ୍ଷା କର,       ଲୋକ ହାସାଇୟା ମାର,
ସ୍ଥାନାସ୍ଥାନ ନ କର ବିଚାରେ ॥
ନହେ ଗୋପୀ ଯୋଗେଶ୍ୱର,       ତୋମାର ପଦ କମଲ
ଧ୍ୟାନ କରି ପାଇବେ ସନ୍ତୋଷ ।
ତୋମାର ବାକ୍ୟ ପରିପାଟୀ,       ତାର ମଧ୍ୟେ କୁଟୀନାଟୀ,
ଶୁନି ଗୋପୀର ବାଢ଼େ ଆର ରୋଷ ॥
ଦେହ ସ୍ମୃତି ନାହି ଯାର,       ସଂସାର କୂପ କାଁହା ତାର,
ତାହା ହୈତେ ନା ଚାହେ ଉଦ୍ଧାର ।
ବିରହ ସମୁଦ୍ର ଜଲେ,       କାମ ତିମିଙ୍ଗିଲେ ଗିଲେ,
ଗୋପୀଗଣେ ଲେହ ତାର ପାର ॥
ବୃନ୍ଦାବନ ଗୋବର୍ଦ୍ଧନ,       ଯମୁନା ପୁଲିନ ବନ,
ସେଇ କୁଞ୍ଜେ ରାସାଦିକ ଲୀଲା ।
ସେଇ ବ୍ରଜେ ବ୍ରଜଜନ,       ମାତା ପିତା ମିତ୍ରଗଣ
ବଡ଼ ଚିତ୍ର କେମନେ ପାଶରିଲା ॥
ବିଦଗ୍ଧ ମୃଦୁ ସଦ୍‌ଗୁଣ       ସୁଶୀଲ ସ୍ନିଗ୍ଧ କରୁଣ
ତାହେ ତୋମାୟ ନାହିଁ ଦୋଷାଭାସ ।
ତେବେ ଯେ ତୋମାର ମନ,       ନାହିଁ ସ୍ମରେ ବ୍ରଜଜନ,
ସେ ଆମାର ଦୁର୍ଦ୍ଦୈବ ବିଲାସ ॥
ନା ଗଣି ଆପନ ଦୁଃଖ,       ଦେଖି ବ୍ରଜେଶ୍ୱରୀ ମୁଖ,
ବ୍ରଜଜନେର ହୃଦୟ ବିଦରେ ।
କିବା ମାର ବ୍ରଜବାସୀ,       କିବା ଜୀୟାଓ ବ୍ରଜେ ଆସି,
କେନ ଜୀୟାଓ ଦୁଖ ସହିବାରେ ॥

ତୋମାର ଯେ ଅନ୍ୟ ବେଶ,          ଅନ୍ୟ ସଙ୍ଗ ଅନ୍ୟ ଦେଶ,
ବ୍ରଜ ଜନେ କଭୁ ନାହି ଭାୟ ।
ବ୍ରଜ ଭୂମି ଛାଡ଼ିତେ ନାରେ,          ତୋମା ନା ଦେଖିଲେ ମରେ,
ବ୍ରଜେ ଜନେର କି ହବେ ଉପାୟ ।।
ତୁମି ବ୍ରଜେର ଜୀବନ,          ତୁମି ବ୍ରଜେର ପ୍ରାନ ଧନ,
ତୁମି ବ୍ରଜେର ସକଲ ସମ୍ପଦ ।
କୃପାର୍ଦ୍ର ତୋମାର ମନ,          ଆସି ଜୀୟାଓ ବ୍ରଜଜନ,
ବ୍ରଜେ ଉଦୟ କରାହ ନିଜ ପଦ ।।
ଶ୍ରୀ ଚୈଃ : ଚ : ।

ଏହି ପଦ ଗାଇ ଗାଇ ଗୌରଲୀଳା ଯେପରି ପୁନରାୟ ପ୍ରକଟ ହେଲା । ଚକ୍ଷୁ ଜଳରେ ତାଙ୍କର ବକ୍ଷସ୍ଥଳ ଭାସିଗଲା । କର ଭଙ୍ଗିରେ ଓ ନୟନର କଟାକ୍ଷରେ ପ୍ରାଣବନ୍ଧୁଙ୍କୁ ଯେ କେତେ କ'ଣ କହିଯାଉଛନ୍ତି, ତାହା ଏକମାତ୍ର ରସମୟ ଭାବନିଧି ଶ୍ରୀ ଗୌରାଙ୍ଗ ସୁନ୍ଦର ହିଁ ଜାଣନ୍ତି । ପଂକ୍ତି ଭୋଗ ଉପଲକ୍ଷେ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ରଥ ବନ୍ଦ ହେଲା । ବଡ଼ ବାବାଜୀ ମହାଶୟ ନିସ୍ତବ୍ଧ ହୋଇ ଅପଲକ ନେତ୍ରରେ ଚାହିଁ ରହିଥିଲେ । ତତ୍କାଳୀକ ଭାବ ଦର୍ଶନରେ ବୋଧ ହେଲା; ଯେତେ ଯେପରି ପ୍ରାଣର ଅତି ନିକଟତମ ବସ୍ତୁକୁ ହରାଇ ଅତିଶୟ ଉତ୍କଣ୍ଠାର ସହିତ ସେ ଖୋଜୁଛନ୍ତି । କ୍ଷଣ-କାଳ ପରେ ତାଙ୍କର ଆଉ ଧୈର୍ଯ୍ୟ ରହିଲା ନାହିଁ । ଦୁଇ ଗଣ୍ଡ ସ୍ଥଳ ଆରକ୍ତିମ ହେଲା—ଅବିରତ ଧାରାରେ ନୟନରୁ ପ୍ରେମାଶ୍ରୁ ବହିବାକୁ ଲାଗିଲା । ଗଦ୍ ଗଦ୍ କଣ୍ଠରେ କ'ଣ ଯେପରି କହିବାକୁ ଚାହୁଁଥିଲେ, କିନ୍ତୁ କଣ୍ଠରୋଧ ହୋଇଗଲା, ଆଉ କିଛି କହିପାରିଲେ ନାହିଁ । କେବଳ 'ଗୋ ଗୋ' ଶବ୍ଦ କରି କରି ମୂର୍ଚ୍ଛିତ ହୋଇ ଭୂମିରେ ପତିତ ହେଲେ । ଅଷ୍ଟସାତ୍ତ୍ୱିକ ବିକାର ଯେପରି ଅବସର

ଦେଖୁଥିଲେ, ସମସ୍ତ ସୁଯୋଗ ଦେଖି ସମସ୍ତେ ଏକ ଯୋଗେ ତାଙ୍କୁ ଆକ୍ରମଣ କଲେ । ତାଙ୍କ ଅଶ୍ରୁଜଳରେ ସେ ସ୍ଥାନଟି କର୍ଦ୍ଦମାକ୍ତ ହୋଇଗଲା । ସେହି ବିଶାଳ ଶରୀରର କମ୍ପନରେ ପାର୍ଶ୍ୱସ୍ଥ ଭକ୍ତଗଣ ସମସ୍ତେ କମ୍ପିତ ହେବାକୁ ଲାଗିଲେ । ଧୂଳି ଧୂସରିତ ଘର୍ମାକ୍ତ ଦେହରେ ପୁଲକାବଳୀ ଯେପରି ସୁପକ୍ୱ କଣ୍ଟକୀ ଫଳ ପ୍ରାପ୍ତ ଶୋଭା ଧାରଣ କଲା । ସୁବିଶାଳ ଶରୀରଟି କେତେବେଳେ ଫୁଲିଉଠେ, ଆଉ କେତେବେଳେ ମାଟି ସହିତ ମିଶିଗଲା ପରି ହୋଇଯାଏ । କେତେବେଳେ ହସ୍ତ ପଦ ଲୌହ ଦଣ୍ଡ ପ୍ରାପ୍ତ ଦୃଢ଼ ହୋଇଯାଏ, ଆଉ କେତେବେଳେ ତୁଳା ପରି ଅତି ନରମ ହୋଇଯାଏ । 'ଗୋ ଗୋ' ଶବ୍ଦ କରି କରି ମୁଖରୁ କେବଳ ଫେଣ ନିର୍ଗତ ହେଉଛି । ଉତ୍କଟ ବିରହ ଉତ୍କଣ୍ଠାରେ ଭୂମିରେ ମୁଖ ଘର୍ଷଣ କରିବାକୁ ପ୍ରବୃତ୍ତ ହୁଅନ୍ତେ, ଭକ୍ତଗଣ କାନ୍ଦି କାନ୍ଦି ହସ୍ତ ଦ୍ୱାରା ନିବାରଣ କରୁଛନ୍ତି । ଏହିପରି ଭାବରେ କିଛି ସମୟ ଅତୀତ ହେଲା । ବହୁ ସନ୍ତର୍ପଣରେ ଅର୍ଦ୍ଧ ବାହ୍ୟ ଦଶା ଲାଭ କରି ପାର୍ଶ୍ୱସ୍ଥ ପ୍ରିୟ ସହଚର ନବଦ୍ୱୀପ ଦାସଙ୍କର କଣ୍ଠ ଧାରଣ ପୂର୍ବକ ଧୀରେ ଧୀରେ ମୃଦୁ ସ୍ୱରରେ କହିବାକୁ ଲାଗିଲେ:—

କେ ମୋର ମରମୀ ବଟେ କାରେ କବ ଦୁଃଖ ।
ନା ହେରି ଗୌରାଙ୍ଗ ଗୃହେ ବିଦରଯେ ବୁକ ॥
କାଁହା ସ୍ୱରୂପ ରାମାରାୟ କାଁହା ନିତ୍ୟାନନ୍ଦ ।
କାଁହା ଶ୍ରୀବାସ ଗଦାଧର ଶ୍ରୀ ଅଦ୍ୱୈତ ଚନ୍ଦ୍ର ॥
କାଁହା ରୂପ ସନାତନ ମୁରାରି ମୁକୁନ୍ଦ ।
କାଁହା ହରିଦାସ କାଁହା ସେନ ଶିବାନନ୍ଦ ॥
ଏହି ନା ରଥେର ଆଗେ ଲୟେ ଭକ୍ତ ଗନ ।
ଭାବାବେଶେ ଗୋରା କତ କରିଲ ନର୍ତ୍ତନ ॥

ସେହି ଜଗନ୍ନାଥ ସେହି ରଥେର ସାଜନ୍ନ ।
କୋଥା ଲୁକାଇଲ ମୋର ଗୋରା ଗୁନମନ ॥

ଅନଲେ ପଶି ମୁଁ କମ୍ପା ଭଖିମୁ ଗରଳେ ।
ଗୌରାଙ୍ଗ ବିରହେ ପ୍ରାନ ତ୍ୟଜିମୁ ସଲିଲେ ॥

ରସଭରେ ଗୋରାବୃନ୍ଦେ ଦେଖିନୁ ନାଚନ୍ତେ ।
ହାରାଇନୁ ହାରାନିଧି ଦେଖିତେ ଦେଖିତେ ॥

କେନ ବା ଆଛୟେ ପ୍ରାନ କି ସୁଖ ଲାଗିୟା
କି ହିୟା ଗଢ଼ିଲ ବିଧି ପାଷାନ କରିୟା ॥

ନୀଳାଚଳବାସୀ ଭକ୍ତଗଣଙ୍କ ପ୍ରତି କର ଯୋଡ଼ି ହେଇ କହିବାକୁ ଲାଗିଲେ :—

ଓଗୋ ନୀଳାଚଲବାସୀ କରି ନିବେଦନ ।
ଏକବାର ଦେଖାଓ ମୋର ପରାନ ରତନ ॥

ଏବାର ପାଇଲେ ଦେଖା ଗୋରା ଦ୍ୱିଜମନ ।
ହିୟାର ମାଝାରେ ରାଖି ଜୁଡ଼ାର ପରାନ ॥
କାଁହା କରେ କାଁହା ଯାଉଁ କହତ ଆମାରେ ।
ନା ହେରି ଗୌରାଙ୍ଗ ଗୁଁଦେ ପରାନ ବିଦରେ ॥

ଏହା କହି କାନ୍ଦି କାନ୍ଦି ଆକୁଳ ହୋଇ ପଡ଼ିଲେ । ସେତେବେଳେ ଭାବର ଭାବୁକ କୌଶଳୀ ନବଦ୍ୱୀପ ଦାସଙ୍କର ମନରେ ହଠାତ୍ ଗୋଟିଏ ଭାବର ଉଦୟ ହେଲା । ସେ କହି ଉଠିଲେ—

ଏଇ ଯେ ନାଚଛେ ଗୋରା ଭକ୍ତଗନ ସାଥେ ।
ଚଲଗୋ ଦେଖିବ ମୋରା ରଥେର ପଶ୍ଚାତେ ॥

ଏଇକଥା ଶୁଣିବା ମାତ୍ରେ ବଡ଼ବାବାଜୀ ମହାଶୟ ପ୍ରେମା-ନନ୍ଦରେ ଅଧୀର ହୋଇ ନବଦ୍ୱୀପଙ୍କୁ ବକ୍ଷରେ ଧାରଣ ପୂର୍ବକ ଦୃଢ଼ ପ୍ରେମାଲିଙ୍ଗନ ଦେଇ କାନ୍ଦି କାନ୍ଦି କହିଲେ, "ଭାଇରେ,—

'କି ଧନ ଆମାର ଆଛେ କବା ହବ ତୋରେ ।
ତୋର ହିନାମରେ ଆଜ କିନଲି ଆମାରେ ।।"

ଏହାପରେ ପ୍ରେମାନନ୍ଦରେ ଦୁଇବାହୁ ତୋଳି ଉଦ୍ଦଣ୍ଡ ନୃତ୍ୟ କରି କରି ରଥ ପ୍ରଦକ୍ଷିଣ ପୂର୍ବକ ପୁନରାୟ ରଥ ସମ୍ମୁଖକୁ ଆସି ପୂର୍ବବତ୍ କୀର୍ତ୍ତନ ଧରିଲେ :—

ଆବେଶେ ଗୌରାଙ୍ଗ ହରି ସ୍ୱରୂପେରେ ବଲେ ।
କତ ନା ରୂପେର ଛଟା ଦେଖ ଗୋ ସକଲେ ।।
ଆସିଛେନ୍ ପ୍ରାନ୍‌ବନ୍ଧୁ ରଥେ ତେ ଚଡ଼ିୟା ।
ଦେଖନା ଗୃହିୟା ରୂପ ଦେଖନା ଗୃହିୟା ।।
କାଲିୟା ବରନ ଖାନି ଚନ୍ଦନେତେ ମାଖା ।
ନଟବର ନାଗର ତ୍ରିଭଙ୍ଗୀମ ବାଙ୍କା ।।
ଅରୁନ୍ କମଲ ଆଁଖି ଢୁଲି ଢୁଲି ଚଲେ ।
ହେରିୟା ମୋହନ ରୂପ ପରାନ ଉଛଲେ ।।

ଏହିପରି କେତେ କେତେ ପଦ ପଦାବଳୀ ଯେ ଗାଇବାକୁ ଲାଗିଲେ, କାହାର ସାଧ୍ୟ ଅଛି ତାକୁ ପୁଣି ଲିପିବଦ୍ଧ କରିବ ? ଦର୍ଶକବୃନ୍ଦ ଥରେ ଥରେ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ଶ୍ରୀମୁଖକୁ ଚାହୁଁଛନ୍ତି, ଆଉ ଥରେ ଥରେ ବଡ଼ବାବାଜୀ ମହାଶୟଙ୍କର ପ୍ରେମରେ ଢଳ ଢଳ ଶ୍ରୀମୁଖକୁ ଚାହିଁ କରତାଳି ଦେଇ ଆନନ୍ଦରେ ନୃତ୍ୟ କରୁଛନ୍ତି । ରଥଯାତ୍ରା ଉତ୍ସବରେ ଆନନ୍ଦର କଥା କହି

ବସିଲେ ଶେଷ ହେବନାହିଁ । ସାମାନ୍ୟ ଲେଖମାର କି ସାଧ୍ୟ ଯେ, ଏଇ ଅପାର ଆନନ୍ଦରାଶିର ଶତାଂଶର ଏକାଂଶ ମଧ୍ୟ ବର୍ଣ୍ଣନା କରିବ ?

ଶ୍ରୀ ଶ୍ରୀ ଜଗବନ୍ଧୁ ଆନନ୍ଦରେ ରଥ ଉପରେ ହଳହଳ ଢଳଢଳ ଚାଲିଛନ୍ତି । କ୍ରମେ ଦିବାବସାନ ହେଲା । ଯାତ୍ରୀମାନେ ପରିଶ୍ରାନ୍ତ ହୋଇପଡ଼ିଲେ । ଭକ୍ତବତ୍ସଳ ଶ୍ରୀ ଶ୍ରୀ ଜଗବନ୍ଧୁ ଭକ୍ତ ଦୁଃଖରେ କାତର ହୋଇ ଯେପରି ସେତେବେଳେ ବଳଗଣ୍ଡି ନିକଟରେ ସେଦିନ ପାଇଁ ବିଶ୍ରାମ କଲେ । ଭକ୍ତଗଣ ମଧ୍ୟ ସ୍ୱ ସ୍ୱ ସ୍ଥାନକୁ ପ୍ରସ୍ଥାନ କଲେ । ବଡ଼ବାବାଜୀ ମହାଶୟ କିନ୍ତୁ ନିଜ ସଙ୍ଗୀମାନଙ୍କ ସହିତ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ସନ୍ଧ୍ୟା ଆରତି ଦର୍ଶନ କରି ରାସ୍ତାକଡ଼ରେ ଏକ ପିଣ୍ଡା ଉପରେ ବସିଲେ । ଭକ୍ତମଣ୍ଡଳୀ ଆସି ବାବାଜୀ ମହାଶୟଙ୍କ ନିକଟରେ ବସି ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ରଥଯାତ୍ରା ସମ୍ବନ୍ଧରେ ବିଶେଷ ଭାବରେ ଆଲୋଚନା କଲେ । ରାତି ଅଧିକ ହୋଇଯିବାରୁ ଭକ୍ତଗଣ ନିଜ ନିଜ ଗୃହକୁ ଚାଲିଗଲେ । କିନ୍ତୁ ବଡ଼ବାବାଜୀ ମହାଶୟ ନିଜ ସଙ୍ଗୀମାନଙ୍କ ସହିତ ସେହି ପିଣ୍ଡା ଉପରେ ପରମାନନ୍ଦରେ ଶୟନ କଲେ । ରାତି ପ୍ରଭାତ ହେବାରୁ ସମସ୍ତେ ଉଠି ନରେନ୍ଦ୍ର ସରୋବରରେ ସ୍ନାନ କରି ନିଜ ନିଜର ନିତ୍ୟକୃତ୍ୟ ସମାପନ ପୂର୍ବକ ରଥ ନିକଟକୁ ଚାଲିଛନ୍ତି । ଏହିସମୟରେ ଶ୍ରୀଯୁକ୍ତ ପରମାନନ୍ଦ ଦାସ ପଣ୍ଡିତ ବାବାଜୀ ନାମକ ଏକ ମୂର୍ତ୍ତି ବୈଷ୍ଣବ ସମସ୍ତଙ୍କୁ ନିଜ ମଠରେ ମହାପ୍ରସାଦ ଗ୍ରହଣ କରିବାକୁ ଅନୁରୋଧ କଲେ । ବୈଷ୍ଣବଙ୍କର ବାକ୍ୟକୁ ଅବହେଳା କରି ନ ପାରି ସମସ୍ତେ ପଣ୍ଡିତଜୀଙ୍କର ମଠରେ ମହାପ୍ରସାଦ ଗ୍ରହଣ କରି କିଛି ସମୟ ବିଶ୍ରାମ ନେବାପରେ ରଥ ନିକଟରେ ଉପସ୍ଥିତ ହେଲେ । କାହାଳୀ, ଘଣ୍ଟ, ଭେରୀ, ମୃଦଙ୍ଗ, କରତାଳ ଧ୍ୱନିରେ

ବଡ଼ଦାଣ୍ଡ ଉଚ୍ଛୁଳି ଉଠିଲା । ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ରଥ ଟଣା ଆରମ୍ଭ ହୁଅନ୍ତେ ବଡ଼ବାବାଜୀ ମହାଶୟ ପ୍ରେମାବିଷ୍ଟ ହୋଇ ପୂର୍ବବତ୍ ପଦ ଧରିଲେ :—

ଆବେଶେ ନାଚଯେ ମୋର ଶଚୀର ନନ୍ଦନ ।
ଗୁରିଦିଗେ ନାଚେ ପ୍ରିୟ ପାରିଷଦ୍ ଗଣ୍ ॥
ଜଗନ୍ନାଥେର ମୁଖ ହେରି ଗୋରା ଦ୍ୱିଜମଣି ।
କତ କି ନା ବଲେ ଯେନ ରାଧା ବିନୋଦିନୀ ॥
ଏସ ହେ ପରାନ୍ ବନ୍ଧୁ ଏସ ହେ କାଳିୟା ।
ଚଲ ବୃନ୍ଦାବନ ଚଲ ରଥେରେ ଚଢ଼ିୟା ॥
ବହୁଦିନ ହଇତେ ସାଧ ତୋମାରେ ଲଇୟା ।
ବୃନ୍ଦାବନେ ଚଲିବାଉଁ ଏକତ୍ର ହଇୟା ॥
ମନୋବାଞ୍ଛା ପୂର୍ଣ୍ଣକର ନନ୍ଦେର ନନ୍ଦନ ।
ମନେ କି ପଡ଼େନା ବନ୍ଧୁ ବ୍ରଜେ ବ୍ରଜଜନ ॥
ସ୍ୱରୂପେର କର ଧରି କତ କି ନା ବଲେ ।
ବକ୍ଷ ଭେସେ ଯାୟ ଦୁଟି ନୟନେର ଜଲେ ॥

ଭକ୍ତଗଣ କୀର୍ତ୍ତନାନନ୍ଦରେ ମତ୍ତ ହୋଇ ନୃତ୍ୟ କରୁଛନ୍ତି । ଶ୍ରୀ ଶ୍ରୀ ଜଗନ୍ନାଥ ଦେବ ଯେପରି ଭକ୍ତଗଣଙ୍କର ଶ୍ରମ ଦେଖି ରଥ ରଖିଦେଲେ । ଏହିପରି ଭାବରେ ଗୁରିଦିନରେ ଶ୍ରୀଶ୍ରୀ ଜଗବନ୍ଧୁ ଗୁଣ୍ଡିଚା ମନ୍ଦିରରେ ପ୍ରବେଶ କଲେ ।

## ଶ୍ରୀ ଗୁଣ୍ଡିଚା ମନ୍ଦିରରେ ଜଗନ୍ନାଥ ଦେବ

ଆଜି ବଡ଼ବାବାଜୀ ମହାଶୟଙ୍କର ମନରେ ନିରାନନ୍ଦ ଭାବ । ବୃନ୍ଦାବନ ଚନ୍ଦ୍ରଙ୍କୁ ବୃନ୍ଦାବନରେ ପାଇ ପ୍ରାଣଖୋଲି ଦୁଇ ପ୍ରାଣର

କଥା କହି ଯେପରି ଶାନ୍ତିଲାଭ କରୁଛନ୍ତି । ଏହିପରି ଅଳ୍ପକ୍ଷଣ ଆନନ୍ଦରେ ଦିନ କଟିବାକୁ ଲାଗିଲା । ହଠାତ୍ ଦିନେ ତାଙ୍କ ମନରେ ଗୋଟିଏ ନୂତନ ଭାବର ଉଦୟ ହେଲା । ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ଶ୍ରୀମୁଖକୁ ଚାହିଁ ତାଙ୍କର ନୟନ ଯୁଗଳରୁ ଅଶ୍ରୁ ବିସର୍ଜନ ହେବାକୁ ଲାଗିଲା । ଅତ୍ୟନ୍ତ ଭାବାବେଶରେ ମୃଦୁମନ୍ଦ ସ୍ୱରରେ ପଦ ଧରିଲେ :—

ସ୍ୱରୂପ ରାମାନନ୍ଦେ ଗୋରା ସଙ୍ଗେତେ ଲଇୟା ।
ଭାବାବେଶେ ଜଗନ୍ନାଥେ କହେନ ଡାକିୟା ।।
ଆମି ତୋମାୟ ନା ଦେଖିଲେ ମରି ।
ତୁମି ଆମାୟ ଚାହନାକି ଫିରି ॥
ଅହିରମା ହାମ ଗୋୟାଳିନୀ ।
ତୁହୁଁ ରସମୟ ଗୁନମନି ॥
ନୟନ କମଲ ଦଲ ଜନୁ ।
ଶିରୀଷ କୁସୁମ ଜନ ତନୁ ।।
ଭୁରୁଯୁଗ କାମେର କାମନ ।
କୋଟି ଚାନ୍ଦ ଜିନୟା ବୟାନ ॥

ଏହିପରି ଆକ୍ଷେପ ଅନୁରାଗରେ ଉଦ୍‌ବେଳିତ ହୋଇ ବାତ୍ୟାହତ ରମ୍ଭାବୃକ୍ଷ ପ୍ରାୟ ତାଙ୍କର ବିଶାଳ ଶରୀରଟି ଭୂମିରେ ନିପତିତ ହେଲା । ସେହି ଅବସ୍ଥାରେ ତାଙ୍କୁ ଧରି ରଖିବାକୁ କାହାର ବା ସାଧ୍ୟ ଅଛି ? ତାଙ୍କର ସେହି ହୃଦୟ ବିଦାରକ କରୁଣ ରୋଦନ, ପ୍ରବଳ ଅଶ୍ରୁଧାରା, ବିରହ ଭାବ ଯେ ଦେଖିଛି, ସେ ଆଉ ନିକାନ୍ଦି ରହିପାରି ନାହିଁ । ମହା ପାଷାଣ୍ଡୀର ମନ ମଧ୍ୟ ବିଗଳିତହୋଇଯାଇଛି । ବଡ଼ବାବାଜୀ ମହାଶୟ ବିସ୍ତୀର୍ଣ୍ଣ

ଜଗମୋହନର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଗଡ଼ି ଯାଉଛନ୍ତି । ତାଙ୍କର ଏ ଅବସ୍ଥା ଦେଖି ଭକ୍ତଗଣ ଧରାଧରି କରି ଜଗମୋହନର ବାହାରକୁ ଘେନି ଆଣିଲେ । ସେଠାରେ ମଧ୍ୟ ସେହିପରି ଭୂମିରେ ଗଡ଼ିବାକୁ ଲାଗିଲେ । ଏହିପରି ଭାବରେ କିଛି ସମୟ ଅତିବାହିତ ହେଲାପରେ ସମ୍ପୂର୍ଣ୍ଣ ଅଚୈତନ୍ୟ ହୋଇ ପଡ଼ିଲେ । ସର୍ବାଙ୍ଗ ଶିଥିଳ ହୋଇଗଲା । ହସ୍ତପଦର ଗ୍ରନ୍ଥି ଗୁଡ଼ିକ ଶ୍ଳଥ ହୋଇଗଲା । ଅତି ନିପୁଣ ଭାବରେ ଲକ୍ଷ ନକରିଲେ ଶ୍ୱାସ କ୍ରିୟା ହେଉଛି କି ନାହିଁ ତାହା ଜାଣିବା କଷ୍ଟକର ହୋଇ ପଡ଼ିଲା । ସମସ୍ତଙ୍କ ମୁଖରେ ଗୋଟିଏ କଥା "କଣ ହେବ ! କି ଉପାୟରେ ବାବାଙ୍କୁ ପ୍ରକୃତିସ୍ଥ କରାଯାଇ ପାରିବ ! !"

ଏହି ସମୟରେ ହଠାତ୍ ଗୈରିକ ବସନଧାରୀ, ଆକର୍ଣ୍ଣ ବିସ୍ତୃତ ନୟନ, ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣ, ନାତିଦୀର୍ଘ, ନାତି ଖର୍ବ, ଅତି ତେଜସ୍ୱୀ ଜଣେ ସାଧୁ ସମସ୍ତଙ୍କୁ ଆଶ୍ୱସ୍ତ କରି କହିଲେ, "ବାବା ! ତୁମ୍ଭେମାନେ କୌଣସି ଭୟ କରନା, ମନୁଷ୍ୟ ଶରୀରରେ ଏଇପରି ଅପୂର୍ବ ଭାବର ସମାବେଶ କଦାଚିତ୍ ଦେଖାଯାଏ । ଆମେ ଶ୍ରୀଚୈତନ୍ୟ ଚରିତାମୃତ ଶ୍ରୀଗ୍ରନ୍ଥରେ ଦେଖିବାକୁ ପାଉ, ଶ୍ରୀମନ୍ ମହାପ୍ରଭୁଙ୍କର ମଧ୍ୟ ଏଇ ଭାବର ଉଦୟ ହୋଇଥିଲା । ତୁମମାନଙ୍କ ମଧ୍ୟରୁ କେହି ଯଦି ଗୀତ ଗାଇ ଜାଣ; ତେବେ ମୁଁ ଯେଉଁପରି ଭାବରେ କହୁଛି, ଠିକ୍ ସେହି ଭାବରେ ଗୀତ ଗାଅ । ଦେଖିବ, ମହାତ୍ମା ଅଚିରେ ଚୈତନ୍ୟ ଲାଭ କରିବେ ।" ସେତେବେଳେ ବଡ଼ ବାବାଜୀ ମହାଶୟଙ୍କର ଅଭିନ୍ନ ହୃଦୟ ନବଦ୍ୱୀପ ଦାଦା ଆଶ୍ୱସ୍ତ ହୋଇ କହିଲେ, "ମହାଶୟ ଆମେ ତ କୌଣସି ଗୀତ ଜାଣୁନା ; ତେବେ ଆପଣ ଯେଉଁ ଭାବଟି କହିବେ, ବାକ୍ୟରେ ଅନ୍ତତଃ ସେହି ଭାବଟି ପ୍ରକାଶ କରିବାକୁ ଚେଷ୍ଟା କରିବୁ ।" ସେତେବେଳେ

ସାଧୁ ଜଣକ କହିଲେ, "ଦେଖ, ଯେତେବେଳେ ପ୍ରଥମେ ଏହି ସ୍ଥାନରେ ଗୀତ ଆରମ୍ଭ ହୁଏ, ସେତେବେଳେ ଶ୍ରୀକୃଷ୍ଣଙ୍କର ପ୍ରତି ଶ୍ରୀମତୀଙ୍କର ଆକ୍ଷେପ ଅନୁରାଗର ଭାବ ଯେଉଁ ଗୀତଟିଏ ଶୁଣିଥିଲ । ସେହି ଭାବାବେଶରେ ତାଙ୍କର ଏହିପରି ଅବସ୍ଥା ହୋଇଅଛି । ଅତଏବ ଶ୍ରୀକୃଷ୍ଣ କର୍ତ୍ତୃକ ଶ୍ରୀମତୀଙ୍କର ସାନ୍ତ୍ୱନା ସୂଚକ ଗୋଟିଏ ପଦ ଯଦି ତୁମେ ଗାଇପାର, ଦେଖିବ, ଅବିଳମ୍ବେ ମହାପୁରୁଷ ଚୈତନ୍ୟ ଲାଭ କରିବେ ।" ସାଧୁଙ୍କର କଥା ଶୁଣି ନବଦ୍ୱୀପ ଦାଦା ନିମୀଳିତ ନେତ୍ରରେ କରୁଣସ୍ୱରେ ଭାବ ଗୋଟିଏ ପଦ ଗାଇବାକୁ ଆରମ୍ଭ କଲେ :—

"ଅକାରଣେ କେନ ଏତ ଅନୁଯୋଗ, ଶୁନ ରାଧେ ବିନୋଦିନି ।
ତୁମିଗୋ ଆମାର ପରାନ୍ ପୁତଲି, ତୋମା ବିନୁ ନାହିଁ ଜାନି ॥
କତେକ ରମଣୀ, ବଲିଜ ନଗରେ କାହାର କରିବ ନାମ ।
ନିଶି ଦିଶି ମୂର୍ତ୍ତି, ଶୟନେ ସ୍ୱପନେ, ଜପିଯେ ତୋମାର ନାମ ॥
ଉଠ ଗୋ କିଶୋରୀ, ମାନ ପରିହରି, ଶପତି ଆମାର ଲାଗେ ।
ହେନ ଦଶା ଦେଖି, ପରାନ ବିଦରେ, କହିନୁ ତୋମାର ଆଗେ ।"

ଏହି ପଦଟି ଶୁଣି ଦେବା ମାତ୍ରେ ବଡ଼ବାବାଜୀ ମହାଶୟ ଚମକି ଉଠି ବସି ପଡ଼ିଲେ । ସେତେବେଳେ ତାଙ୍କ ଶରୀରରେ ଯୁଗପତ୍ ଅଶ୍ରୁ, କମ୍ପ, ପୁଲକାଦି ସାତ୍ତ୍ୱିକ ବିକାର ପ୍ରକାଶ ପାଇଲା । ଦେଖି ସମସ୍ତେ ଆଶ୍ୱସ୍ତ ହେଲେ ଏବଂ ସାଧୁଙ୍କୁ ଶତ ଶତ ଧନ୍ୟବାଦ ଦେବାକୁ ଲାଗିଲେ । ସମସ୍ତେ ସେତେବେଳେ ପ୍ରେମାନନ୍ଦରେ 'ଗୌରହରି ବୋଲ' ବୋଲି କହି ଉଚ୍ଚ ଧ୍ୱନି କରି ଉଠିଲେ । ତାଙ୍କର ଧୂଳି ଧୂସରିତ ଅଙ୍ଗରେ କୌଣସି ଆଘାତ ଲାଗିଛି କି ନା ସଙ୍ଗୀଗଣ ଦେଖିବାକୁ ଲାଗିଲେ । ମହାପୁରୁଷଙ୍କର

କିନ୍ତୁ କୌଣସି ଦିଗକୁ ଲକ୍ଷ୍ୟ ନାହିଁ । ପୁନରାୟ ସେ କୀର୍ତ୍ତନର ଦୁଆ ଧରିବାକୁ ପ୍ରସ୍ତୁତ ହୁଅନ୍ତେ, ସଙ୍ଗୀମାନଙ୍କର ଅନିଚ୍ଛା ବୁଝିପାରି ରାମକୃଷ୍ଣ ଦାସ ବାବାଜୀ ମହାଶୟ କହିଲେ, ଜଗନ୍ନାଥଙ୍କର ଭୋଗ ହୋଇଯାଇଛି, ଚାଲନ୍ତୁ, ଆମେ କିଛି ସମୟ ନିର୍ଜନରେ ବସି ପଡ଼ିବା ।" ବଡ଼ବାବାଜୀ ମହାଶୟ ଏହି କଥା ଶୁଣି ସଙ୍ଗୀମାନଙ୍କ ସହ ଶ୍ରୀମନ୍ଦିର ନିକଟରେ ଗୋଟିଏ ବୃକ୍ଷ ତଳେ ଉପବେଶନ କଲେ । ଆଗନ୍ତୁକ ଲୋକମାନେ ତାଙ୍କୁ ଘେରି ବସିଗଲେ । କିଛିକ୍ଷଣ ପରେ ପୂର୍ବୋକ୍ତ ଗୋପାଳବାବୁ କହିଲେ, "ମୁଁ ଗୋଟିଏ ବିଷୟ ପଚାରିବି ବୋଲି ଭାବିଛି ; କିନ୍ତୁ ଆପଣ ବଡ଼ କ୍ଳାନ୍ତହୋଇ ପଡ଼ିଛନ୍ତି ; ଜିଜ୍ଞାସା କରିବାକୁ ସାହାସ ହେଉନାହିଁ ।

ବଡ଼ବାବାଜୀ—କୁହ, ସ୍ୱଚ୍ଛନ୍ଦରେ କୁହ ।

ଗୋପାଳ—ଆପଣଙ୍କ ଶ୍ରୀମୁଖରୁ ଯେତେବେଳେ କୀର୍ତ୍ତନ ଶୁଣେ, ସେତେବେଳେ କେବଳ ରାଧାଭାବ ଭିନ୍ନ ଅନ୍ୟ କିଛି ଶୁଣିବାକୁ ପାଏ ନା । ଅନ୍ୟ ଭାବ କ'ଣ ଆମର ଗ୍ରହଣ ଯୋଗ୍ୟ ନୁହେଁ ?

ବଡ଼ବାବାଜୀ—ତେବେ ଶୁଣ, ଶ୍ରୀ ଗୌରାଙ୍ଗ ଆମର ଭାବ ନିଧି । ଏପରି ଭାବ ନାହିଁ, ଯାହା ଗୌରାଙ୍ଗଙ୍କର ଶ୍ରୀଅଙ୍ଗରେ ନାହିଁ; କିନ୍ତୁ ତାଙ୍କର ଅବତାର-ଗ୍ରହଣର ପ୍ରଧାନ ଉଦ୍ଦେଶ୍ୟହିଁ ରାଧା ଭାବ ଆସ୍ୱାଦନ । ଏଇ ରାଧାଭାବ ଆସ୍ୱାଦନ ଲାଗି ତାଙ୍କର ସନ୍ନ୍ୟାସ ଗ୍ରହଣ । ଶ୍ରୀ ରାଧାର ଭାବକାନ୍ତି ଘେନି ଶ୍ରୀ ଗୌରାଙ୍ଗ ଅବତାର: ଅତଏବ ତାଙ୍କୁ ଯେ ସେଇ ଭାବରେ ଚାହିଁବେ, ସେ ତାଙ୍କର ଅନ୍ତରଙ୍ଗ । ଆହୁରି ଦେଖ, ଶ୍ରୀ ଗୌରାଙ୍ଗ ପ୍ରଭୁଙ୍କରତ ଅନେକ ସଙ୍ଗୀ ଥିଲେ, ତେବେ ସ୍ୱରୂପ ଓ ରାମାନନ୍ଦ ଏତେ

ପ୍ରିୟ ହେଲେ କାହିଁକି ? ତାହାର କାରଣ—ସ୍ୱରୂପ ସବଦା ଲଳିତା ଭାବରେ ଏବଂ ରାମାନନ୍ଦ ରାୟ ବିଶାଖା ଭାବରେ ବିଭାବିତ ଥାଆନ୍ତି । ଶ୍ରୀମନ ମହାପ୍ରଭୁଙ୍କର ମନରେ ଯେତେବେଳେ ଯେଉଁ ଭାବଟି ଉଦୟ ହୁଏ, ଏହି ଦୁଇଜଣଙ୍କି ତା'ର ପୁଷ୍ଟି ସାଧନ କରିଥାନ୍ତି । ସେମାନେ ପ୍ରଭୁଙ୍କୁ ରାଧାରାଣୀ ଭିନ୍ନ ଅନ୍ୟ କିଛି ମନେ କରନ୍ତି ନାହିଁ । ସେଥିଲାଗି ପ୍ରଭୁ ମଧ୍ୟ ଏହି ଦୁଇଜଣଙ୍କୁ ନେଇ ରସ ଆସ୍ୱାଦନ କରି ସୁଖ ପାଆନ୍ତି । ଯେଉଁ ବ୍ୟକ୍ତି ଯେଉଁ ବସ୍ତୁର ଅଭିଳାଷ କରେ, ତାହାକୁ ସେଇ ବସ୍ତୁ ପରିବର୍ତ୍ତେରେ ଅନ୍ୟ ବସ୍ତୁ ଦେଲେ ସେ କି କେଉଁଠି ସନ୍ତୁଷ୍ଟ ହୁଏ ? ତୁମେ ପିପାସିତ ହୋଇ ପାଣିପି ଜଳ ଚାହିଁଲେ ତୁମକୁ କେହି ଦୁଗ୍ଧ ଦେଲେ ତୁମର କଣ ସେଇପରି ଆନନ୍ଦ ଲାଭ ହୁଏ ? ବିଶେଷତଃ ଗୋପୀ ଭାବହିଁ ଆମର ଏକମାତ୍ର ସାଧନା । ଯିଏ ମଧୁର ଭାବ ନେଇ ରାଧା ଗୋବିନ୍ଦଙ୍କର ଉପାସନା କରିବେ, ସେ ଶ୍ରୀ ଗୌରାଙ୍ଗଙ୍କୁ ରାଧାରାଣୀ ଭାବ ନକେ ତାଙ୍କର କିଙ୍କରୀ ଗୋପୀ ହୋଇ ଉପାସନା ନ କରିଲେ କିପରି ଲୀଳାରେ ପ୍ରବେଶ ହୋଇ ପାରିବ ? ସେଇଥିପାଇଁ ବୈଷ୍ଣବ ସିଦ୍ଧାନ୍ତ କହେ :—

ଭାବନିଧି ଶ୍ରୀ ଗୌରାଙ୍ଗେ ଭାବେର ଶାବଲ୍ୟ ।
ସବ ଭାବ ହୈତେ ରାଧା ଭାବେର ପ୍ରାବଲ୍ୟ ॥
ସବ ଭାବ ହୈତେ ଗୋରାର ରାଧାଭାବ ସାର ।
ରାଧିକାର ଭାବେ ହୟ ସୁଖ ପାରାବାର ॥
ଗୋପୀଭାବ ନିଜ ଦେହେ ଅଙ୍ଗୀକାର କରି ।
ଗୁରୁ ଆନୁଗତ୍ୟେ ଭଜ ଗୌରାଙ୍ଗ ଶ୍ରୀହରି ॥
ଗୌରାଙ୍ଗ ଶ୍ରୀ ରାଧାରାଣୀ ଶ୍ରୀ ଗୁରୁ ମଞ୍ଜରୀ ।
ତାଁର ଦାସୀ ଭାବ ସଦା ଅଙ୍ଗୀକାର କରି ॥

ଏଇ ଭାବେ ଗୌରଲୀଳା କରିଲେ ଭାବନ ।
ହେଥାୟ ଗୌରାଙ୍ଗ ପାବେ ବ୍ରଜେ କୃଷ୍ଣ ଧନ ॥
କାହାର ଓ କୋନଓ ଭାବେ ନିନ୍ଦା ନା କରିବେ ।
ନିନ୍ଦା ଶୂନ୍ୟ ନମ୍ର ଭାବେ ଗୌରାଙ୍ଗ ଭଜିବେ ॥

ବଡ଼ବାବାଜୀ ମହାଶୟଙ୍କର ଉପଦେଶ ଶୁଣି ଗୋପାଳବାବୁଙ୍କ ମନର ସନ୍ଦେହ ମୋଚନ ହେଲା ।

ସେ ଅତିଶୟ ଆନନ୍ଦରେ କହିବାକୁ ଲାଗିଲେ, "ଆଜି ମୋର ପରମ ଶୁଭଦିନ; ଯେହେତୁ ମୁଁ କଳିହତ ମାୟା ମୁଗ୍ଧ ବହିର୍ମୁଖ ଜୀବ ହୋଇ ମଧ୍ୟ ଅତି ନିଗୂଢ଼ ଗୌରାଙ୍ଗ ତତ୍ତ୍ୱ ଅବଗତ ହୋଇଅଛି । ଆଜି ଆପଣ ପରିଶ୍ରାନ୍ତ ହୋଇଛନ୍ତି, ରାତି ମଧ୍ୟ ଅଧିକ ହେଲାଣି, ଚାଲନ୍ତୁ ବର୍ତ୍ତମାନ ଘରକୁ ଯିବା ।" ବଡ଼ବାବାଜୀ ମହାଶୟ କହିଲେ, "ତୁମ୍ଭେମାନେ ଯାଅ । ଆଜି ଆମେ ଏହିଠାରେ ରହିବୁ ।" ଧୀରେ ଧୀରେ ଅଧିକାଂଶ ଲୋକ ବିଦାୟ ଗ୍ରହଣ କଲେ । ଅନ୍ତରଙ୍ଗ ସଙ୍ଗୀଗଣ ମାତ୍ର ରହିଲେ । ଜନୈକ ଭକ୍ତ କିଛି ମହାପ୍ରସାଦ ଆଣି ଦେବାରୁ ସମସ୍ତେ ମହାପ୍ରସାଦ ସେବନ କରି ସେଠାରେ ରାତି ଯାପନ କଲେ । ଅତି ପ୍ରତ୍ୟୁଷରୁ ଇନ୍ଦ୍ରଦ୍ୟୁମ୍ନସରୋବରରେ ଯଥାବିହିତ ସ୍ନାନାଦି ପ୍ରାତଃକୃତ୍ୟ ଶେଷକରି ପୁନରାୟ ସମସ୍ତେ ଶ୍ରୀ ମନ୍ଦିରକୁ ଆସି ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ମଙ୍ଗଳ ଆରତି ଦର୍ଶନ କଲେ । ଦିନ ଦ୍ୱିପ୍ରହର ସମୟରେ ଶ୍ରୀ ଶ୍ରୀ ଜଗବନ୍ଧୁଙ୍କର ସକାଳ ଧୂପ ଶେଷ ହେବା ସଙ୍ଗେ ସଙ୍ଗେ ଜନୈକ ଭକ୍ତ ଆସି ଏମାନଙ୍କୁ ଆଦରରେ ପ୍ରସାଦ ପାଇବାପାଇଁ କହିଲେ । ବଡ଼ବାବାଜୀ ମହାଶୟ ପ୍ରେମାବେଶରେ ଅଶ୍ରୁଳ ନୟନରେ କହି ଉଠିଲେ, "ଦେଖ ବାବା, ଆମେ ଭଜନ ସାଧନ କରୁନାହିଁ, ତଥାପି ପରମ ଦୟାଳୁ ପ୍ରଭୁ ଏତେ ଖାଇବାକୁ ପିନ୍ଧିବାକୁ

ହେଉଛନ୍ତି । ଯଦି ଆମେ ଭଜନ ପରାୟଣ ହେଉଥାଆନ୍ତୁ, ତେବେ କ'ଣ ନ ହେଉଥାଆନ୍ତା । ହାୟରେ କଠିନ ପ୍ରାଣ ! ହାୟରେ ଦୁଷ୍ଟ ମନ ! ଦୟାମୟ ଶ୍ରୀ ଭଗବାନଙ୍କର ଏତେ ଦୟା—ଏତେ କରୁଣା ଦେଖି ମଧ୍ଯ ତୋର ଭକ୍ତି ବିଶ୍ୱାସ ଜନ୍ମିଲା ନାହିଁ ? ଧିକ୍ ଏଇ ମାନବ ଶରୀର ! ଧିକ୍ ଆମର ଜ୍ଞାନ ଗର୍ବରେ ମତ୍ତ ହୋଇ ଲୋକ ଭୁଲାଇବା ପାଇଁ ବୈଷ୍ଣବ ସାଜ ଉଦର ପୂରଣ ଆଶାରେ ଦେଶ ଦେଶ ଭ୍ରମଣ କରିବା ।" ଏହିପରି ଆର୍ତ୍ତିପୂର୍ଣ୍ଣ ବାକ୍ୟ କହି କହି ଭକ୍ତଟିର ସାଙ୍ଗରେ ଯାଇ ଶ୍ରୀ ମନ୍ଦିରର ପଶ୍ଚାତ୍ ଭାଗରେ ପଙ୍ଗତରେ ବସିଲେ । କିଛିକ୍ଷଣପରେ ପ୍ରେମାନନ୍ଦରେ ଧ୍ୱନି ଆରମ୍ଭ କଲେ,—"ସାଧୁ ଅବଧାନ !

ଭ୍ରମିତେ ଭ୍ରମିତେ କୋଟି କୋଟି କଳ୍ପ
ଦୈବାତ ବ୍ରାହ୍ମଣ ବୈଷ୍ଣବ ସେବା ଘଟେ ଯଦି ଅଳ୍ପ ।
ତବେ ଜୀବେର କର୍ମବନ୍ଧ ଛୁଟି କୃଷ୍ଣପର ହୟ ।
ସାଲୋକ୍ୟାଦି ଚୁରିମୁକ୍ତି ଅଙ୍ଗୁଳି ନା ଛୁଁୟ ।।
ତାରପର ପ୍ରେମ ଭକ୍ତି ଯମେ ଗୋପିକାର ଭାବ ।
ତାରପର ମହାଭାବ ଶ୍ରୀରାଧାର ଭାବ ।।
ସର୍ବୋପରି ତତ୍ତ୍ୱ ନିତାଇ ଗୌରାଙ୍ଗ ସ୍ୱରୂପ ।
ରସରାଜ ମହାଭାବ ଦୁହୁଁ [illegible]ରୂପ ।।
ଯାହା ଦେଖି ରାୟ ରାମାନନ୍ଦ ମୁରଛିତ ।
ତାହା ଏକ ଶ୍ୱପଚ ବୈଷ୍ଣବ ସେବାୟ ଲଭ୍ୟ ।।

ଏହିପରି ନାନା ଧ୍ୱନି ଦେଇ ପ୍ରେମାନନ୍ଦରେ ସମସ୍ତେ ମହା-ପ୍ରସାଦ ସେବନ କରି ସିଂହଦ୍ୱାରର ବହିଃ ଭାଗରେ ଗୋଟିଏ ପ୍ରକାଣ୍ଡ ବୃକ୍ଷ ମୂଳରେ ବିଶ୍ରାମ କଲେ ।

—ଇତି ପ୍ରଥମ ଖଣ୍ଡ—